ବୃହତ୍ ଓ ସଚିତ୍ର

# ଅବୋଲକର କାହାଣୀ



୧ଙ୍କ

ପ୍ରକାଶକ
ଧର୍ମଗ୍ରନ୍ଥ ଷ୍ଟୋର · କଟକ-୨

ବୃହତ ଓ ସଚିତ୍ର

# ଅବୋଲକରା କାହାଣୀ

## ଦ୍ୱିତୀୟ ଭାଗ



( ନୂତନ ମୁଦ୍ରଣ )

ଲେଖକ—ଶ୍ରୀ ଅଭିମନ୍ୟୁ ଚରଣ ମହାନ୍ତି, କଥାଚିତ୍ରକର

ସ୍ୱତ୍ୱକ୍ରୀତ—ଶ୍ରୀ ବିଦ୍ୟାଧର ସାହୁ

ପ୍ରାପ୍ତିସ୍ଥାନ—ଧର୍ମଗ୍ରନ୍ଥ ଷ୍ଟୋର
ପରିଚାଳକ—ଶ୍ରୀ ବିଦ୍ୟାଧର ସାହୁ
ଅଳିଶା ବଜାର, କଟକ-୨
ଫୋନ ନଂ-୨୪୭୯୬

ମୂଲ୍ୟ—ସାତଟଙ୍କା ମାତ୍ର

# ଅବୋଲକର କାହାଣୀ ଦ୍ୱିତୀୟ ଭାଗର

## ସୂଚୀପତ୍ର

| ବିଷୟ | ପୃଷ୍ଠାଙ୍କ |
| --- | --- |




( ଏହାପରେ ତୃତୀୟ ଭାଗ ପଢ଼ନ୍ତୁ )

ବୃହତ୍ ଓ ସଚିତ୍ର

# ଅବୋଲକରା କାହାଣୀ

## ଦ୍ୱିତୀୟ ଭାଗ

ନାଗରାଜାନନ୍ଦଂ ଦେବଂ ନାଗଭୂଷଣ୍ୟ ନନ୍ଦନଂ
ନାଗଯଜ୍ଞୋପବୀତେନଂ ଖଗେଶ୍ୱର ନମାମିହଂ ।

### ଖଣିଗାତ କଥା

ସେଠାରୁ ଗୋସେଇଁ ଅବୋଲକରା ଦୁହେଁ କିଛିବାଟ ଯିବାପରେ ଗୋଟିଏ ପାହାଡ଼ିଆ ଜାଗା ପଡ଼ିଲା । ଗୋସେଇଁ ଆଗରେ, ବାଉଳ ପଛରେ ଚାଲିଛନ୍ତି । କିଛିଦୂର ଯିବାପରେ ଅବୋଲକରା ଗୋଟିଏ ପଥର ହାବୁଡ଼ କରୁଡ଼ ପଡ଼ିଲା । ତେବେ ଉଠି ସେଠାରେ ଆଣୁ ଆଉଁଶି ହେଉ ହେଉ ମୁହଁ ପୋଛ କ'ଣ ଦେଖିଲା । ଗୋସେଇଁ ତାର ପଡ଼ିଯିବା ଆବାଜ୍ ପାଇ ପଛକୁ ବୁଲି କହିଲେ ପଡ଼ିଗଲୁକିରେ ଅବୋଲକରା ? ଅବୋଲକରା କହିଲା ହଁ ଗୋସେଇଁ । ଆଣୁ ଗଣ୍ଠି ଛିଡ଼ିଗଲା । ତେବେ ଗୋଟିଏ ପଥର ଓଲଟିଯିବାରୁ ଦେଖିଲି ମନ୍ତ୍ରବନ୍ଧ କବାଟ ଗୋଟିଏ ବହୁତ ଦୂରଯାଏ ଦିଶୁ ଛି । ସେଟା ପୁଣି ପଥରରେ ବନ୍ଧା ହୋଇଛି । ଏହାର କାରଣ କ'ଣ ଗୋସେଇଁ ନ ବତାଇଲେ ମୁଁ ଆଉ ଯିବ ନାହିଁ, ଏଇଠି ବସିଲି ଲେଉଟିବାକୁ । ଗୋସେଇଁ ବୁଢ଼ାଲୋକ । ଥରକୁଥର ଅବୋଲକରା ଏପରି କହିବାରୁ ବିରକ୍ତ ହୋଇ କହିଲେ ବେଙ୍କପୋ ରଣ୍ଡିପୁଅକୁ ସାଙ୍ଗରେ ଆଣି ବଡ଼ ବିପଦରେ ପଡ଼ିଲି ତ । ଯେଉଁଠି ଯାହା ଦେଖୁଛି ତହିଁର କାରଣ ବତାଅ । ହଉ କ'ଣ କରିବା, ଆଣିଛୁ ଯେତେବେଳେ କହିବାକୁ

ହେବ । ଯୁା ଘର କହଲେ ହେଇ ଆଗକୁ ଗ୍ଲ । ସେଇଠ ଚୂଡ଼ା ଗଣ୍ଡାଏ ଖାଇ କଥା କହିବା । ଏହାକହି ସେ ଆଗେଇଲେ । ଆଗକୁ ଯାଇ ବରଗଛ ମୂଳରେ ଗୋସେଇଁ କହଲେ "ରଖ ଗଣ୍ଡି ଲ. ଖୋଲଛଟା, ଅବୋଲକରରେ ଶୁଣ ସେ କଥା" ଅବୋଲକର ଖୁସି ହୋଇ ବସିବାରୁ ଗୋସେଇଁ କହଲେ-ପୂର୍ବକାଳରେ ହରପୂଜା ନଗରରେ ବିଶ୍ୱମ୍ଭର ନାମରେ ଜଣେ ଚକୁଳଆ ପଣ୍ଡା ରହୁଥିଲେ । ତାଙ୍କ ସ୍ତ୍ରୀଙ୍କ ନାଁ ହନୋହନ । ହଟର ଗରବ । ପଣ୍ଡା ବରଡ଼ାଛଟା ଧର ଗାଁ ବୁଲ ଭିକମାଗି ଆଣେ । ଯାହାମିଳେ ସେଥିରେ ପଣ୍ଡା-ପଣ୍ଡିଆଣୀ ଦହେଁ ଚଳନ୍ତ । 'ଭିକ ଗୃଉଳରେ ଅରୁଆ ଉସୁନା ବାର ହସ୍ତର କ'ଣ ଅଛୁ । ତା ଛଡ଼ା' ଗେରସ୍ତ ଭିକାରି ବାଞ୍ଝୀ ଗାଁରଯା, ହେଣେ ମନ ତେଣେ ଖର୍ଚ୍ଚ କରଯା, ବୋଲ କଥାରେ ଅଛୁ, ଏ ଦହେଁ ବେଶ୍ ହସ ଖୁସିରେ ଥାନ୍ତ । ଦନେ ନଈକ ଗାଧୋଇ ଗଲାବେଳେ ପଣ୍ଡିଆଣୀକ ଦେଖି ଜଣେ ସ୍ତ୍ରୀଲୋକ ତା ଗେରସ୍ତକୁ କହଲ । ଟିକଏ ରହଯାଅ, ବାଞ୍ଝୀ ବ୍ରାହ୍ମଣୀ ମୁହଁଦେଖି ଗଲେ ଘଣ ହେବନ । କଥାଟା ବ୍ରାହ୍ମଣୀ କାନରେ ବାଜଲ । ସେ ନଈରୁ ଆସି ରନ୍ଧାବଢ଼ା ନ କର ମୁହଁମାଡ଼ି ଶୋଇ ପଡ଼ିଲ । ପାଞ୍ଚଟା ବେଳକୁ ଚକୁଳଆପଣ୍ଡା ଭିକ ମାଗିଆଣି ଦେଖିଲେ ପଣ୍ଡିଆଣୀ ମୁହଁମାଡ଼ି ଶୋଇଚ । ସେଇଠୁ କ'ଣ ହେଲ ବୋଲ ପଗ୍ଚରବାରୁ ବ୍ରାହ୍ମଣୀ କହଲ ବାରବର୍ଷ ହେଲ ବାହା ହୋଇ ଅଇଲ ପିଲାପିଲାର ମୁହଁତ ଦେଖିଲ ନାହିଁ । ପୁଣି ଆଜ ସେ ସାମଲଘର ବୋହୂ ମୋତେ ଦେଖି ତା ଗେରସ୍ତକୁ କହଲ ରୁହମ, ବାଞ୍ଝୀ ବ୍ରାହ୍ମଣୀଟା ଯାଉ, ଯିବ । ବାଞ୍ଝୀ ମୁହଁ ଦେଖିଗଲେ ଘଣ ହେବନାହିଁ । ମୁଁ ତ ଏ ଅପମାନ ଆଉ ସହବ ନାହିଁ । ବାହାହୋଇ ଆସି ଦନେ ଓଳିଏ ଭଲଖାଇ, ଭଲ ପିନ୍ଧ ତ ପାରଲ ନାହିଁ । ପୁଣି ଛମଭଳ ଅଣପୁ ରୁଷିଆ ଘରେ ରହି ଅପମାନ ସହବ ?

ପଣ୍ଡା କହିଲେ ସେ'ଟା ତ ହାତର କଥା ନୁ । କରିବା' ଆଜକାଲି ଯୁଗରେ ତ ପିଲାପିଲାର ଝିଅନ୍ତ ନାହିଁ, ଆମେ ଭଲ ଅଛୁ କଥାରେ ଅଛୁ···ବାନ୍ଧ ଗଣ୍ଠି ତଳରେ, ଦୁଇ ଚରଣୀ ଭଲରେ । ପୁଣି ତୋ ମୁଣ୍ଡରେ କାହିଁକି ଏ ପିଲା ବଗୁଲ ମାରିଲା । ହଉ ରହ ରାନ୍ଧିକରି, କାଲି ଶିବପୂଜା କରି ଦେଖେ କ'ଣ ହଉଛି । ସେଇଠୁ ବ୍ରାହ୍ମଣୀ ଉଠି ଖାଇବାର ଯୋଗାଡ଼ କଲା ।

ତହିଁ ଆରଦିନ ପଣ୍ଡା ଶିବପୂଜା କରି ପ୍ରାର୍ଥନା କରିବାରୁ ଶିବ ପ୍ରସନ୍ନ ହୋଇ କହିଲେ କ ବର ମାଗିବୁ ମାଗ । ପଣ୍ଡା କହିଲେ ସନ୍ତାନ ଦିଅ, ଶିବତ ସେତେବେଳେ ଗଞ୍ଜେଇ ଭୋଳରେ ଥାନ୍ତି, ଆଗପଛ ନ ଭାବି କହିଲେ ସାତ ସନ୍ତାନର ବାପା ମା ହୁଅ । ହେଲେ ପୁଅ ଝିଅ କିଛି ବାଛିକରି କହିଲେ ନାହିଁ । ସେହିଦିନୁ ପଣ୍ଡିଆଣୀ ଗର୍ଭବତୀ ହେଲେ ଓ ସମୟ ହବାରୁ ଗୋଟିଏ ଝିଅ ଜନ୍ମ କଲେ ।

ନ ହଉଥିବ ନାଇଁ, ହେଲେତ ଆଉ ରକ୍ଷାନାହିଁ । ପଣ୍ଡିଆଣୀ ବର୍ଷକିଆ ଅଇଣ୍ଡି ହେବାରୁ ନ'ବର୍ଷ ଭିତରେ ସାତଟି ଝିଅ ଜନ୍ମ-କଲେ, ଝିଅ ଗୁଡ଼ିକ ଗୋଟି ସଖିପରି ସୁନ୍ଦରୀ ସବୁ । ଗରିବ ଘରେ ପରିବ ପରି ଝିଅ ଗୁଡ଼ିକ ସବୁବେଳେ ଖାଇବୁ ଖାଇବୁ ହେଉଥାନ୍ତି । ଥରେ ପଣ୍ଡା ପଣ୍ଡିଆଣୀଙ୍କି କହିଲେ ଆହେ । ବହୁଦିନରୁ ପିଠା ଖାଇବାକୁ ମନ ବଳୁଛି, କାଲି କିଛି ପିଠା କରିବଟି । ପଣ୍ଡିଆଣୀ କହିଲେ କରିଦେବାକୁ ମୁଁ କ'ଣ ମନାକରୁଛି ? ବରି,ନଡ଼ିଆ,ଗୁଡ଼ କ ଆଣିଦିଅ, କରିଦେବି । ତହିଁ ଆରଦିନ କୌଣସିମତେ ପଣ୍ଡା ବରି ଦୁଇସେର, ଗୁଡ଼ କ ଛ' ସେର, ନଡ଼ିଆ ଗଣ୍ଡାଏ ଆଣିଦେଲେ । ପଣ୍ଡିଆଣୀ ସଜାଡ଼ି ତାକୁ ଚକୁଳି ପିଠା ତିଆରି କଲେ । ହେଲେ ଝିଅପିଲା ଗୁଡ଼ାକ ମା' ପିଠା ତିଆରି କରୁ କରୁ ଚୁଲି ପାଖରେ ବସି ଖାଇ ଦେଲେ । ପଣ୍ଡା ପଣ୍ଡିଆଣୀଙ୍କ ପାଇଁ ଦୁଇଟି ଚକୁଳି ବଳିଲା ।

ପଣ୍ଡିଆଣୀ ସେ ଦୁଇଟିକୁ ଥୋଇ ଭାବଲେ ଏଇଲେ କ'ଣ କରିବ । ଝିଅପିଲା ଚକୁଳିଯାକ ଖାଇଗଲେ । ପଣ୍ଡା ଯୋଉ ବଦରାଗୀ ଲୋକ, ଅବକା ଆସି ପିଠା ନ ପାଇଲେ ପିଟିଦେବ । ଏମିତି ଭାବୁ ଭାବୁ ଦେଖିଲେ ଆଗରେ ଷଣ୍ଢ ଗୋବର ପଡ଼ିଚି । ଷଣ୍ଢଟା କୋଉଠି ପାକଲଧାନ ଖାଇ ଆସି ହଗିଚି ଯେ, ସେଥିରେ ଖାଲି ଧାନ ଚଳବଳ । ତାକୁ ଦେଖି ପଣ୍ଡିଆଣୀ ମନରେ ଭରସା ହେଲା । ସେ ଗୋଟେଇ ଆଣି ସେଥିରୁ ହ'ଗୁଳବୋଝ ନେଇ ପାଣିରେ ଧୋଇ ଧାନ ବାହାର କରିନେଇ ଅରୁଆ କୁଟି ସେଥିରୁ ମୋଟ ଚକୁଳି ହ'ଗଣ୍ଡା କରି ତା ଉପରେ ଆଗ ଚକୁଳି ଦୁଇଟା ଥୋଇଦେଲା ଅଳପ ଅନ୍ଧାରେ ବଳନ ମନ, ପଣ୍ଡିଆଣୀ ବସିଥାନ୍ତି ।

ସଞ୍ଜ ବେଳକୁ ପଣ୍ଡା ଆସି ପଚାରିଲେ ପିଠା କରିଚ ? ଗୁଳାବଟି ଦୁଇଟା ଦବ ଖାଇବାକୁ । ପଣ୍ଡିଆଣୀ କହିଲେ ଦେବ କ'ଣ, ଘରେ ଥୁଆ ହୋଇଚି ଖାଇବ ଯାଅ । ସେଇଠୁ ପଣ୍ଡା ଯାଇ ତରବର କରି ଗୋଡ଼ ହାତ ଧୋଇ ଆସି ଚକୁଳି ଖାଇବାକୁ ବସିଗଲେ । ଉପରୁ ଦୁଇଟା ଖାଇ ହସିହସି କହିଲେ ବଢ଼ିଆ ଚକୁଳି କରିଛ ପଣ୍ଡିଆଣୀ । ତା'ପରେ ଚକୁଳିଟିଏ ଖାଇଚନ୍ତି ପଣ୍ଡାଙ୍କର ଗୋଟିଏ କୋହଳ ଦାନ୍ତ ଗଳି ପଡ଼ିଲା । ଆଉ ଗୋଟିଏ ଖାଇବାରୁ ଯୋଡ଼ିଏ ଦାନ୍ତ ହରେଇ ବସିଲେ ପଣ୍ଡା । ତା' ପରେ ମୁହଁ ଧୋଇ ଧୋଇ ପଣ୍ଡିଆଣୀକୁ କହିଲେ ଆଗେଭଲଲାଗୁଥିଲା । ଏଗୁଡ଼ାକ କ'ଣ କରିଚୁ କ'ଣ ଦେଇ । ବାଢ଼ପାଢ଼ୁ, ଯୋଉ ବାପଘରୁ ଏପରି ପିଠା କରିବା ଶିଖି ଆସିଚ ସେଇଠି ନେଇ ଛାଡ଼ି ଆସିବି । ଏକଥା ଶୁଣି ପଣ୍ଡିଆଣୀ ଭୟ କରି କହିଲେ ମୋର ଦୋଷ କ'ଣ ? ଭଲପିଠା ଗୋଟାଏଟେ କଲାବେଳକୁ ତ ଝିଅଗୁଡ଼ାକ ଭେଁ କରି ଉଠି ଖାଇଗଲେ ସବୁ । ଶେଷକୁ ଷଣ୍ଢ ଲଣ୍ଡରୁ ଧାନଆଣି ପିଠା କଲରୁ ସିନା କାଠପରି ହେଲା । ନୋହିଲେ ଆଗପିଠା କେମିତି ଲୁଣାପରି ନରମ ହୋଇଥିଲା କହିଲ ।

ପଣ୍ଡା ଭାବିଲେ ଏ ପିଲାଗୁଡ଼ାକ ଯାହାହେଲେଣି ମଣିଷକୁ ଖୋଇ ପେଇ ଦେବେ ନାହିଁ । ଏ ଗୁଡ଼ାକୁ ଛଡ଼ିଦେଲେ ରକ୍ଷା । ଏହା ଭାବି ତହିଁ ଆରଦିନ ଝିଅ ପିଲାଙ୍କୁ କହିଲେ ସବୁ ଖିଆ ପିଆ ସାରି ଆସ । ତମକୁ ଯାତରା ଦେଖେଇ ନେଇଯିବି । ଯାତରା କଥା କହିଲେ ତ ପିଲାଏ ଆତୁରା ହୋଇ ବାହାରନ୍ତି । ଏମାନେ ଯାତରା ନାଁ ଶୁଣି ଜାମା ଲୁଗା ମଣ୍ଡେଇ ଗୁଲୁ ଗୁଲୁ ହୋଇ ବାହାରିଲେ ।

ପଣ୍ଡା ସେଗୁଡ଼ିଙ୍କୁ ନେଇ ଅନେକ ଦୂର ଯିବାରୁ ଗୋଟିଏ ଜଙ୍ଗଲ ପଡ଼ିଲା । ଝିଅଗୁଡ଼ିକ କହୁଥାନ୍ତି ବାପା ! ଯାତରା ଆଉ କେତେ ବାଟ ରହିଲା ? ପଣ୍ଡା କହୁଥାନ୍ତି ଆଗକୁ ଚାଲ, ଅଳପଦୂର ଅଛି । ଏମିତି କହିଯାଇ ଯେମିତି ଘୋର ବନସ୍ତ ମଝିରେ ପହଞ୍ଚିଲେ ସେଇଠି ଗୋଟିଏ ଗଛମୂଳରେ ଝିଅଗୁଡ଼ିଙ୍କୁ ବସେଇ ପଣ୍ଡା କହିଲେ ତମେ ଏଇଠି ବସିଥାଅ, ମୁଁ ଜଳଖିଆ ଆଣେ । ଏହାକହି ସେ ଏକବାରେ ଛୁ । ରାତି ଛ' ଘଡ଼ିବେଳକୁ ଆସି ଘରେ ପହଞ୍ଚି ଡାକିଲେ ଆଗୋ ପଣ୍ଡିଆଣୀ ଦରଜା ଖୋଲ । ପଣ୍ଡିଆଣୀ ତ ରୁହିଁ ବସିଥାନ୍ତି । ପିଲାମାନେ କେତେବେଳେ ଆସିବେ । ପଣ୍ଡା ପହଞ୍ଚି ପିଣ୍ଡାରେ ବସି ମୁଣ୍ଡରେ ହାତ ଦେଇ କାନ୍ଦିଲେ ହୁଁ, ହୁଁ, ହୁଁ । ପଣ୍ଡିଆଣୀ ଥକାବକା ହୋଇ ପଚାରିଲେ କିହୋ କ'ଣ ହେଲାକି ? ପଣ୍ଡା କହିଲେ ଆମ ସାତ ଝିଅଙ୍କୁ ବାଘ ନେଇଗଲା ହୁଁ, ହୁଁ, ହୁଁ, ହୁଁ । ଏହାଶୁଣି ପଣ୍ଡିଆଣୀ ବାଡ଼େଇ କରୁଡ଼ ହୋଇ ଆଲୋ ସୁମୀ, ରେମୀ କାହିଁ ଗଲଲୋ, ଆଲୋ ମୋର ଜେମା, ଭଷୀ କାହିଁ ଗଲଲୋ, କହି କାନ୍ଦିବାକୁ ଲାଗିଲେ । ପଣ୍ଡା ମଧ୍ୟ ଥଣ୍ଡା ହୋଇ ଭାବିଲେ ବଗ ମୁଣ୍ଡରେ କାମଠା ଭଲକରି ନାହାନ୍ତି । ବ୍ରାହ୍ମଣ ଜାତିରେ ଯୋଉ କନ୍ୟା ଅଭାବ ଲୋକେ ଗଞ୍ଜାମରୁ ପାକସ୍ଥାନ ଯାଏ ଦଉଡ଼ୁଛନ୍ତି, ଯୋଉ ସୁନ୍ଦରିଆ ଝିଅଗୁଡ଼ାକ ହୋଇଥିଲେ ବିକ ଦେଇଥିଲେ ବି ସାତହଜାର ଟଙ୍କା ହୋଇଥାନ୍ତା । ଏହି ପ୍ରକାର ଭାବି କାନ୍ଦକୋଡ଼ ହୋଇ ରହିଲେ ।

ତେଣେ ବେଳ ବୁଡ଼ିଆସିଲା । ଝିଅଗୁଡ଼ିକ ବାପାଙ୍କୁ ଖୋଜି ଖୋଜି ସଞ୍ଜ ହୋଇ ଆସିବାରୁ, ସେଇ ବରଗଛ ଉପରକୁ ଉଠି ଡାଳରେ ବସି କାନ୍ଦିବାକୁ ଲାଗିଲେ । ଭୋକରେ ପେଟ ଜଳୁଛି । ବାଘଭାଲୁ ଦୌଡ଼ୁଛନ୍ତି । ସେଥିପାଇଁ ସେମାନେ ନୀରବରେ ବସି କାନ୍ଦୁଛନ୍ତି ।

ଯୋଗକୁ ସେଦିନ ସେ ଦେଶର ରାଜା ଶିକାର କରିବାକୁ ଯାଇ ରାତି ହୋଇଯିବାରୁ ସେଇ ଗଛ ମୂଳରେ ଆଶ୍ରୟ ନେଲେ । 'ନାରଣ୍ୟମାଂ ଜଗଦୀଶ ରକ୍ଷ, ଭକ୍ତ ଭଗବାନ ତାଙ୍କୁ ନେଇ ସେଇଠି ପହଞ୍ଚାଇ ଦେଲେ । ରାଜା ଗଛମୂଳରେ ବସିଛନ୍ତି, ଏହିବେଳେ ଉପରୁ ଟୋପା ଟୋପା କରି ଲୁହବିନ୍ଦୁ ଝରି ପଡ଼ିଲା । ରାଜା ଭାବିଲେ ଉପରୁ କ'ଣ ପଡ଼ିଲା । ଚଢ଼େଇ ଜଳ ମୁତିଲେ ନା କ'ଣ । ଏହା ଭାବି ଉପରକୁ ଆଲୁଅ ପକାଇ ଦେଖିଲେ ସାତଝିଅ ବସି କାନ୍ଦୁଛନ୍ତି । ରାଜା ଲୋକ ପଠେଇ ଝିଅଗୁଡ଼ିକୁ ଓହ୍ଲାଇ ଆଣି କଥା କ'ଣ ପଚାରିବାରୁ ଝିଅମାନେ କହିଲେ ଆମେ ଚକୁଳିଆ ପଣ୍ଡାଙ୍କ ଝିଅ । ବାପା ଆମକୁ ପୋଷି ନ ପାରିବାରୁ ବଣରେ ଛାଡ଼ି ଯାଇଛନ୍ତି ।

ରାଜା ଦେଖିଲେ ଝିଅଗୁଡ଼ିକ ଦେଖିବାକୁ ଅତି ସୁନ୍ଦରୀ । ବ୍ରାହ୍ମଣ ଜାତିର ଝିଅ, ବଡ଼ଟି ଯୁବତୀ ହେବାକୁ ଯାଉଛି । ତା ତଳଟି ବାଳା, ତା ତଳଟି କିଶୋରୀ । ଯଦ୍ୟପି 'ଆମ୍ଭାନାଂ ସତତଂ ରକ୍ଷେ, କଥାକୁ ଭାବି ପେଟଦାଉ ପାଇଁ ପଣ୍ଡା ଛାଡ଼ିଗଲା, ଆମରତ ଧନର ଅଭାବ ନାହିଁ, ଆମେ ଏ ସାତ କନ୍ୟାଙ୍କୁ ନେଇ ରାଣୀ କରିବା । ଏହା ଭାବି ସୁଆରରେ ଚଢ଼େଇ ସାତ ଭଉଣୀଙ୍କୁ ନେଇ ଯାକଯମକ କରି ବାହା ହେଲେ । 'କପାଳ ଲିଖନ କେ କରିବ आନ, ସୁକୃତ ଫଳଇ ଆସିଲେ ସୁଦିନ' କଥାପରି ଏମାନେ କୁଡ଼ିଆରୁ ଯାଇ ଗଡ଼ କୋଠରେ ବସି ରାଣୀ ହେଲେ । ରାଜା ସାତରାଣୀଙ୍କୁ ନେଇ ମଉଜରେ ଥା'ନ୍ତି··· ଏମାନଙ୍କୁ ଦାସଦାସୀ ଖଟୁଥାନ୍ତି ।

ଏମିତିକରି ଅନେକ ଦିନ ଗଲା । ହେଲେ ବଡ଼ ଛ'ଭଉଣୀଙ୍କର କାହାରି ପିଲାପିଲି ହେଲେ ନାହିଁ । ସେଥିପାଇଁ ରାଜାଙ୍କର ମନ ଦୁଃଖ । କେତେଦିନ ପରେ ସବା ସାନ ରାଣୀର ଗର୍ଭ ହେଲା, କଥାରେ ଅଛି-'ଅନ୍ୟ ସଉତୁଣୀ ଲଳେ ପାଳେ, ଭଉଣୀ ସଉତୁଣୀ ବିଷଦେଇ ଜାଳେ । ଏଠି ସେମିତି ହେଲା ସାନ ଭଉଣୀର ଗର୍ଭ ହେବାରୁ ବଡ ଛ' ଭଉଣୀ ବିଚାର କଲେ ଆମରତ ପିଲା ହେଲେ ନାହିଁ, ସାନ ଅନପ ଦିନେ ପୁଅ ମା' ହୋଇ ରାଜଲକ୍ଷ୍ମୀ ବୋଲାଇବ ଆମେ ଅନାଦରରେ ସଢ଼ିବା ସିନା । ଏମିତି ପାଞ୍ଚ କରୁ କରୁ ସାନ ରାଣୀରି ଦଶମାସ ପୂରିଲା । ଗର୍ଭ ଯନ୍ତ୍ରଣା ବଢ଼ିଲା । ଯେଉଁଦିନ ପ୍ରସବ ହେବ ସେଦିନ ଏମାନେ ପାଞ୍ଚକରି ଗୋଟିଏ କାଠ କଣ୍ଢେଇ ଠିକୁଲାଠି କରି ରଖିଲେ । ରାତି ବେଳକୁ ଯେମିତି ପ୍ରସବ ବେଳ ହେଲା···ଏମାନେ ପୋଖରୀ ଆଖିରେ ଅନ୍ଧପୁଟୁଳି ବାନ୍ଧି ବସାଇଲେ ଶୁଳଆଣୀକୁ ଟଙ୍କା ଦେଇ ହାତ କଲେ । ଅଧରାତିରେ ପ୍ରସବ ହେଲା ପୁଅଟିଏ । ଏମାନେ ସେ ପୁଅଟିକୁ ପୋଖରୀ ପାଖରୁ କାଢ଼ିନେଇ ସେଇ କାଠ କଣ୍ଢେଇଟିକୁ ଥୋଇଦେଇ ଆସିଲେ । ଶୁଳଆଣୀକୁ ଟଙ୍କାଦେଇ ଶିଖାଇ ଦେଇ ରଜା ପଚାରିଲେ କହିବୁ ସାନରାଣୀ ଏଇ କାଠ କଣ୍ଢେଇଟି ଜନ୍ମ କରିଛନ୍ତି ।

କିଛି ସମୟ ପରେ ସାନରାଣୀର ଚେତା ହେଲା । ରଜା ମଧ୍ୟ ଆସି ପଚାରିଲେ କ'ଣ ହୋଇଛି, ଶୁଳଆଣୀ ଦିହିଁଙ୍କି ସେ ଠିକୁଲାଠି ଦେଖେଇ କହିଲା ରାଣୀ ଏଇ କାଠ କଣ୍ଢେଇଟି ଜନ୍ମ କରିଛନ୍ତି । ରାଜା ରାଣୀ ଦିହେଁ ମନ ଦୁଃଖରେ ରହିଲେ । ଏ ଛ'ରାଣୀ ଜନ୍ମିଥିବା ପୁଅଟିକୁ ଗୋଟେ ହାଣ୍ଡିରେ ପୁରାଇ ପୋଖରୀ ବନ୍ଧରେ ପୋତି ଦେଇ ଆସିଲେ । ରଜାଙ୍କୁ ଦେଖିଲେ କହନ୍ତି ରାଣୀ ଦେଇଛନ୍ତି କାଠ କଣ୍ଢେଇ, ରଜାଙ୍କର ଗଲା ଯାଉଛି ବଂଶ ।

ତେଣେ ବେଳ ବୁଡ଼ିଆସିଲା । ଝିଅଗୁଡ଼ିକ ବାପାଙ୍କୁ ଖୋଜି ଖୋଜି ସଞ୍ଜହୋଇ ଆସିବାରୁ, ସେଇ ବରଗଛ ଉପରକୁ ଉଠି ଡାଳରେ ବସି କାନ୍ଦିବାକୁ ଲାଗିଲେ । ଭୋକରେ ପେଟ ଜଳୁଛି । ବାଘଭାଲୁ ଦୌଡ଼ୁଛନ୍ତି । ସେଥିପାଇଁ ସେମାନେ ନୀରବରେ ବସି କାନ୍ଦୁଛନ୍ତି ।

ଯୋଗକୁ ସେଦିନ ସେ ଦେଶର ରାଜା ଶିକାର କରିବାକୁ ଯାଇ ଶ୍ରାନ୍ତ ହୋଇଯିବାରୁ ସେଇ ଗଛ ମୂଳରେ ଆଶ୍ରୟ ନେଲେ । 'ଅବଶ୍ରମ୍ମାଂ ଜଗଦୀଶ ରକ୍ଷ, ଭଲ ଭଗବାନ ତାଙ୍କୁ ନେଇ ସେଇଠି ପହଞ୍ଚାଇ ଦେଲେ । ରାଜା ଗଛମୂଳରେ ବସିଛନ୍ତି, ଏହିବେଳେ ଉପରୁ ଟୋପା ଟୋପା କରି ଲୁହବିନ୍ଦୁ ଝରି ପଡ଼ିଲା । ରାଜା ଭାବିଲେ ଉପରୁ କ'ଣ ପଡ଼ିଲା । ଚଢ଼େଇ ଜନ୍ତୁ ମୁତିଲେ ନା କ'ଣ । ଏହାଭାବି ଉପରକୁ ଆଲୁଅ ପକାଇ ଦେଖିଲେ ସାତଝିଅ ବସି କାନ୍ଦୁଛନ୍ତି । ରାଜା ଲୋକ ପଠେଇ ଝିଅଗୁଡ଼ିକୁ ଓହ୍ଲାଇ ଆଣି କଥା କ'ଣ ପଚାରିବାରୁ ଝିଅମାନେ କହିଲେ ଆମେ ଚକୁଳିଆ ପଣ୍ଡାଙ୍କ ଝିଅ । ବାପା ଆମକୁ ପୋଷି ନ ପାରିବାରୁ ବଣରେ ଛାଡ଼ି ଯାଇଛନ୍ତି ।

ରାଜା ଦେଖିଲେ-ଝିଅଗୁଡ଼ିକ ଦେଖିବାକୁ ଅତି ସୁନ୍ଦରୀ । ବ୍ରାହ୍ମଣ ଜାତିର ଝିଅ, ବଢ଼ିଛି ଯୁବତୀ ହେବାକୁ ଯାଉଛି । ତା ତଳକି ବାଳା, ତା ତଳକି କଂଶୋରୀ । ଯଦିଓ 'ଆତ୍ମାନାଂ ସତତଂ ରକ୍ଷେ, କଥାକୁ ଭାବି ପେଟଦାଉ ପାଇଁ ପଣ୍ଡା ଛାଡ଼ିଗଲା, ଆମରିତ ଧନର ଅଭାବ ନାହିଁ, ଆମେ ଏ ସାତ କନ୍ୟାଙ୍କୁ ନେଇ ରାଣୀ କରିବା । ଏହା ଭାବି ସୁଆରରେ ଚଢ଼େଇ ସାତ ଭଉଣୀଙ୍କୁ ନେଇ ଯାକଯମକ କରି ବାହା ହେଲେ । 'କପାଳ ଲିଖନ କେ କରିବ ଆନ, ସୁକୃତ ଫଳଇ ଆସିଲେ ସୁଦିନ' କଥାପରି ଏମାନେ କୁଡ଼ିଆରୁ ଯାଇ ଗଡ଼ କୋଠରେ ବସି ରାଣୀ ହେଲେ । ରାଜା ସାତରାଣୀଙ୍କୁ ନେଇ ମଉଜରେ ଥା'ନ୍ତି··· ଏମାନଙ୍କୁ ଦାସଦାସୀ ଖଟୁଥାନ୍ତି ।

ଏମିତିକରି ଅନେକ ଦିନ ଗଲା । ହେଲେ ବଡ ଛ'ଭଉଣୀଙ୍କର କାହାରି ପିଲାପିଲି ହେଲେ ନାହିଁ । ସେଥିପାଇଁ ରାଜାଙ୍କର ମନ ଦୁଃଖ । କେତେଦିନ ପରେ ସବା ସାନ ରାଣୀର ଗର୍ଭ ହେଲା, କଥାରେ ଅଛି-'ଅନ୍ୟ ସଉତୁଣୀ ଲାଳେ ପାଳେ, ଭଉଣୀ ସଉତୁଣୀ ବିଷଦେଇ ମାରେ । ଏଠି ସେମିତି ହେଲା ସାନ ଭଉଣୀର ଗର୍ଭ ହେବାରୁ ବଡ ଛ' ଭଉଣୀ ବିଚାର କଲେ ଆମରତ ପିଲା ହେଲେ ନାହିଁ, ସାନ ଅଳପ ଦିନେ ପୁଅ ମା' ହୋଇ ରାଜଲକ୍ଷ୍ମୀ ହୋଇବ ଆମେ ଅନାଦରରେ ସଡ଼ିବା ସିନା । ଏମିତି ପାଞ୍ଚ କରୁ କରୁ ସାନ ରାଣୀର ଦଶମାସ ପୂରିଲା । ଗର୍ଭ ଯନ୍ତ୍ରଣା ବଢ଼ିଲା । ଯେଉଁଦିନ ପ୍ରସବ ହେବ ସେଇଦିନ ଏମାନେ ପାଞ୍ଚକରି ଗୋଟିଏ କାଠ କଣ୍ଢେଇ ପିତୁଳାଟି କରି ରଖିଲେ । ରାତି ବେଳକୁ ଯେମିତି ପ୍ରସବ ବେଳ ହେଲା···ଏମାନେ ପୋଖରୀ ଆଖିରେ ଅନ୍ଧପୁଟୁଳି ବାନ୍ଧି ବସାଇଲେ ଶୁଳଆଣୀକୁ ଟଙ୍କା ଦେଇ ହାତ କଲେ । ଅଧରାତିରେ ପ୍ରସବ ହେଲା ପୁଅଟିଏ । ଏମାନେ ସେ ପୁଅଟିକୁ ପୋଖରୀ ପାଖରୁ କାଢିନେଇ ସେଇ କାଠ କଣ୍ଢେଇଟିକୁ ଥୋଇଦେଇ ଆସିଲେ । ଶୁଳଆଣୀକୁ ଟଙ୍କାଦେଇ ଶିଖାଇ ଦେଇ ରଜା ପଚାରିଲେ କହିବୁ ସାନରାଣୀ ଏଇ କାଠ କଣ୍ଢେଇଟି ଜନ୍ମ କରିଛନ୍ତି ।

କିଛି ସମୟ ପରେ ସାନରାଣୀର ଚେତା ହେଲା । ରାଜା ମଧ୍ୟ ଆସି ପଚାରିଲେ କ'ଣ ହୋଇଛି, ଶୁଳଆଣୀ ଦହିଁଙ୍କି ସେ ପିତୁଳାଟି ଦେଖେଇ କହିଲା ରାଣୀ ଏଇ କାଠ କଣ୍ଢେଇଟି ଜନ୍ମ କରିଛନ୍ତି । ରାଜା ରାଣୀ ଦିହେଁ ମନ ଦୁଃଖରେ ରହିଲେ । ଏ ଛ'ରାଣୀ ଜନ୍ମିଥିବା ପୁଅଟିକୁ ଗୋଟିଏ ହାଣ୍ଡିରେ ପୂରାଇ ପୋଖରୀ ବନ୍ଧରେ ପୋତି ଦେଇ ଆସିଲେ । ରଜାଙ୍କୁ ଦେଖିଲେ କହନ୍ତି ରାଣୀ ହୋଇଛନ୍ତି କାଠ କଣ୍ଢେଇ, ରଜାଙ୍କର ଗୋଲ ଯାଉଛି ବଂଶ ।

ଏହାପରେ ସାତ ବର୍ଷରେ ସାନରାଣୀ ସାତଟି ପୁଅ ଜନ୍ମକଲେ ଓ ସେମାନେ ସେହିପରି କାଠ କଣ୍ଢେଇ ରଖି ପୁଅଗୁଡ଼ିକୁ ନେଇ ପୋଖରୀ ବନ୍ଧରେ ପୋତିଦେଲେ । ଏହାପରେ ସାନରାଣୀ ଗୋଟିଏ ଝିଅ ଜନ୍ମକଲେ । ତାକୁ ମଧ୍ୟ ଏମାନେ ପୂର୍ବପରି ପୋତିଦେଲେ । ଏହା ଦେଖି ସାନରାଣୀ ବଡ଼ ଦୁଃଖରେ ରହିଥାନ୍ତି । କଥା ଗୁଡ଼ାକ ରାଜ୍ୟଯାକ ବ୍ୟାପିଗଲା । ଯିଏ ଶୁଣିଲା ସିଏ କହିଲା 'ବରଂ ବନ୍ଧ୍ୟା, ବରଂ ପୁଂସ୍ୟା ଅଥବା ନପୁଂସା ହେବା ଭଲ, ଏପରି ଅଲକ୍ଷଣି ଜନ୍ମ ହେବା ଉଚିତ ନୁହେଁ । ରଜା ଏକଥା ଶୁଣି ତାଙ୍କ ମନରେ ମଧ୍ୟ କ୍ରୋଧ ଆସିଲା । ସେ ଅତି କୋପକରି ସାନରାଣୀକୁ ରାଜପୁରରୁ ଛାଡ଼ିଦେଲେ । ଗନ୍ତାପୁତକୁ କହିଲେ ଆଜିଠାରୁ ଏ ଅଲକ୍ଷଣୀ ଯାଇ ଘୋଡ଼ାଶାଳରେ ରହୁ, ଘୋଡ଼ାଶାଳ ସଫା କରୁ ତାକୁ ଦିନକୁ ଅଧସେରେ ଲେଖାଏଁ ଖୁଉଜ ଦେବ । ଏହାକହି ସାନରାଣୀକୁ ଘରୁ ଛାଡ଼ିଦେଲେ । ଚାକର ତାଙ୍କୁ ନେଇ ଘୋଡ଼ାଶାଳରେ ଛାଡ଼ିଦେଇ ଆସିଲା । ରାଣୀ କର୍ମ ଆଦରି ଈଶ୍ୱରଙ୍କୁ ଦୁଃଖ ଜଣାଇ ଘୋଡ଼ାଶାଳ ସଫାକରି ରହିଥାଏ । ତା'ର ଏ ଅବସ୍ଥା ଦେଖି ବଡ଼ ରାଣୀମାନେ ଖୁସି ହେଉଥାନ୍ତି ।

ମଣିଷ ଭାଗ୍ୟରେ କ'ଣ ଅଛି କେହି କହି ପାରିବେନା । ଆଜି ଯେ ରାଜେନ୍ଦ୍ରସନେ କାଲି ସେ ଭିକାରୀ । ଦରିଦ୍ର ଚଣ୍ଡାଳିଝିଅ ବନ-ବାସିନୀରୁ ରଜାଙ୍କର ପ୍ରିୟବଷ୍ଟା ରାଣୀ, ପରେ ଘୋଡ଼ାଶାଳ ନିକାଣୀରୁ କ'ଣ ହେବେ କିଏ କହିବ । ନପୁଃ-ର ବରାଦ 'କାହାର ଆୟୁତନାହିଁ ଏ ଜଗତେ, ନିୟତିକୁ ନେବ ନିଜ ଇଚ୍ଛାପଥେ' ପଦକୁ ଭାବି ରାଣୀ ଘୋଡ଼ାଲଣ୍ଡୀ ସଫା କରି ବଞ୍ଚୁଥାଏ । ତେଣେ ତାର ସାତପୁଅ ଓ ଝିଅଟି ପୋତାହୋଇଥିବା ଜାଗାରେ ସାତଟି ଅର୍ଜ୍ଜୁନଗଛ ଓ ଗୋଟିଏ ପାଟଳୀଗଛ ହୋଇ ଉଠିଲେ । ରାଣୀ ଘୋଡ଼ାଶାଳକୁ ଯିବା ବର୍ଷକ ଭିତରେ ସେ ଗଛ ବଢ଼ି ଉଠି ସେଥିରେ ସୁନାଫୁଲ ଫୁଟିଲା ।

ରାତି ପାହିଲା ବେଳକୁ ସୁନାର ଫୁଲ ଗୁଡ଼ିକ ଝଡ଼ି ଗଛ ମୂଳରେ ପଡ଼ିଥାଏ । ବାଛୋଇମାନେ ଗୋଟାଇ ନେଇ ହାଟରେ ବିକି ହଜାର ହଜାର ଟଙ୍କା ପାଆନ୍ତି । କ୍ରମେ ଏକଥା ଦେଶଯାକ ଚହଲି ଗଲା । ଲୋକମାନେ ସୁନାଫୁଲ ନବାକୁ ସକାଳେ ଆସି ଭିଡ଼ ଜମେଇଲେ ।

ମାଳି ଏକଥା ଯାଇ ରଜାଙ୍କୁ ଜଣେଇବାରୁ ରଜା ସେ ଗଛ ଜଗିବାକୁ ପାଇକ ପଠାଇ ଦେଲେ । ସେମାନଙ୍କୁ ହୁକୁମ ଦେଲେ ତମେ କଡ଼ା ପହରା ଦେଇ ରହିବ, ଯେପରି ଅନ୍ୟ କେହି ଗୋଟିଏ ବି ସୁନାଫୁଲ ନେଇ ନ ଯାଏ । ମାଳୀଙ୍କି କହିଲେ ସକାଳେ ଯେତେ ସୁନାଫୁଲ ଝଡ଼ିବ ସେ ସବୁକୁ ଆଣି ତୁମେ ଆମଠାରେ ଜମା ଦେବ । ରଜାଙ୍କର ହୁକୁମ ପାଇ ମାଳି ଓ ପାଇକମାନେ ଯାଇ ବଗିଚାକୁ ଜଗି ରହିଲେ । ମାଳିମାନେ ଗଛମୂଳରେ ଜଗି ବସିବାରୁ ଗଛର ଫୁଲତକ ସବୁ ବହୁରି କଲେ—

"ଆମେ ସାତଭାଇ ସାତ ଅର୍ଜୁନ; ଭଉଣୀ ପାଟଳୀ ଫୁଲ ଆମ ବାପାଙ୍କର ମାଳି ଆସିଛନ୍ତି; ଦେବାକି ନ ଦେବା ବୋଲ୍"

ଅର୍ଜୁନ ଡାଳରେ କଢ଼ି ଗୁଡ଼ିକ ଏକଥା କହିବାରୁ ପାଟଳୀ ଗଛର କଢ଼ି କହିଲା—

'ଘଇରେ ମଞ୍ଜି ରହିଛୁ ମୂଳ, ଆମର ସ୍ୱର୍ଗେ ଲାଗୁ ଡାଳ
ଆମେ ଥାଉ ଥାଉ ଆମର ମା' ପୋଛେ ଘୋଡ଼ାଶାଳ'

ଏକଥା ଶୁଣି ଆଠଟିଯାକ ଗଛ ଏକବାରେ ପଚାଶ ହଜାର ହାତ ଆକାଶକୁ ବଢ଼ିଗଲେ । ଫୁଲଟିଏ ଗୋଟିଏ ଝଡ଼ିଲା ନାହିଁ । ମାଳିମାନେ ଆଙ୍କୁଡ଼ି ନଳଯୋଡ଼ି ବଢ଼ାଇ ବି ଫୁଲ ଗୋଟିଏ ଝଡ଼େଇ ପାରିଲେ ନାହିଁ ।

ନିରାଶରେ ହତାଶ ହୋଇ ଶେଷକୁ ଯାଇ ଏକଥା ରଜାଙ୍କୁ ଜଣେଇ ଦେଲେ । ରଜା ଯେମିତି ଶୁଣିଲେ ଗଛ ଗୁଡ଼ାକ ମଣିଷ ପରି

**କଥାକହି**, **ବସ୍ତ୍ରର** କଡ଼ **ଆକାଶକୁ** ବଢ଼ିଗଲେ ବୋଲି, ତାଙ୍କୁ ବଡ଼ ବିସ୍ମୟ ଲାଗିଲା । **ବିଦୂଷକ** ପୁଣି କହିଲା—ହଜୁର ରାଜା, ପ୍ରଜା, ଭାଇ, ଭଉଜ, ପୁଅ, ଭାର୍ଯ୍ୟା କିନା ଷଡଯନ୍ତ୍ର କରନ୍ତି ମଣିଷ ବୋଲି । ଅବୋଲା ଗଛ ଗୁଡ଼ାକ ବି ଷଡ଼ଯନ୍ତ୍ର **କରୁଚନ୍ତିନା** ମଣିଷ ପରି । ଅସମ୍ଭବ, ଅସମ୍ଭବ ମହାରାଜ । 'ଶିଳାଭାସନ୍ତି ପାଣିଷୁଂ ଗୀତଗାବନ୍ତି ବାନରାଃ' କେଉଁଠି ହୋଇଛି ? ପଥର ପାଣିରେ **ଭାସେ**, ମାଙ୍କଡ଼ ଗୀତ ଗାଏ କେବେ ଦେଖିଛନ୍ତି ? ଗଛଗୁଡ଼ାକ କଥା କହି ଆକାଶକୁ ବଢ଼ିଯିବେ କିପରି ? ହଜୁର ଭଲକରି ତଦନ୍ତ କରନ୍ତୁ । ଏ ବେହିପୋ ଗାଲୁଆ ଗୁଡ଼ାକ, ମିଛକଥା କହୁଛନ୍ତି ।

ରଜା ସେଦିନ ରାତିରେ ପୁଣି **ବିଶ୍ୱାସୀ** ବରକନ୍ଦାଜ୍ ପଠାଇ ଗଛମୂଳ ଜଗାଇଲେ ଓ କହିଲେ ସକାଳେ ସୁନା ଫୁଲ ଝଡ଼ିଲେ ସବୁ ତମେ ନେଇ ଆସିବ । ବର୍କନ୍ଦାଜ୍ମାନେ ଯୋହୁକୁମ୍ କହିଯାଇ ଗଛମୂଳ ଜଗି ରହିଲେ । ତାଙ୍କୁ ଦେଖି ରାତିରେ ଗଛଗୁଡ଼ାକ କହିଲେ—

ଆମେ ସାତଭାଇ **ସାତ** ଅରଜୁନ, ଭଉଣୀ **ପାଟଳୀ** ଫୁଲ,
ଆମ ବାପାଙ୍କର ସେନା ଆସିଛନ୍ତି ଦେବାକି ନଦେବା ବୋଲ୍,

ଏହାଶୁଣି ପାଟଳୀ ଗଛ କହିଲା—

'ଭଇଁରେ **ମଞ୍ଜେଇରହୁ** ମୂଳ ଆମର ସ୍ୱର୍ଗେ ଲାଗୁ ଡାଳ
ଆମେ ଥାଉ ଥାଉ ଆମର ମା ପୋଛେ ଘୋଡ଼ାଶାଳ ।'

ଏହା କହିବାରୁ ଅଠଟିଯାକ ଗଛର ଡାଳ ସୁନାଫୁଲରେ ହସି ହସି ନୂବେଶେ ଆକାଶକୁ ଉଠିଗଲେ । ରାତିପାହିବାରୁ ବର୍କନ୍ଦାଜମାନେ ଅନେଇଲେ ଗଛ ଡାଳଗୁଡ଼ିକ ଦୃଷ୍ଟି ପାରେଇ ଆକାଶକୁ ବଢ଼ି-ଯାଇଛନ୍ତି । ସେମାନେ ଏ ଆଶ୍ଚର୍ଯ୍ୟ ଦେଖି ଶୁଣି ଆସି ରାଜାଙ୍କୁ ଜଣେଇ ଦେଲେ । ରଜା ଏ ଖବର ପାଇ ବଡ଼ ଭାବିତ ହେଲେ । ବିଦୂଷକ କହିଲା ହଜୁର । ବର୍କନ୍ଦାଜ ଗୁଡ଼ାଙ୍କର କଥାଶୁଣି ଭାବୁଛନ୍ତି

କ'ଣ ? ସେ ଗୁଡ଼ାକୁ ତ ଧରିଆଣି କହିଲେ ବାନ୍ଧି ଆଣନ୍ତ, ତାଙ୍କ ଦେହରୁ ଏ କାର୍ଯ୍ୟ ହେବ ? ମନ୍ତ୍ରୀ ତ ସର୍ବେସର୍ବା, ତାଙ୍କୁ ପଠାଉନାହାନ୍ତି । ରଜା କହିଲେ ଠିକ୍ କହୁଛ ବିଦୂଷକ, ଆଜ ମନ୍ତ୍ରୀ ଯାଆନ୍ତୁ । ତହୁଁ ସେ ମନ୍ତ୍ରୀଙ୍କୁ ଡାକି ପୂର୍ବପର ହୁକୁମ୍ ଦେଲେ ।

ମନ୍ତ୍ରୀ ବିଚାର ନ କରିବେ ଗୁରୁ କାହିଁ । ରଜା ଆଜ୍ଞା ମାନ ଦହୁଁସ୍ୱାମୀ କରିବାକୁ ବାଧ୍ୟ ଯେ । ପୁଣି କଲେ କୁଳ କୁଟୁମ୍ବକୁ ଲଜ୍ଜା ନ କଲେ ତ କୁଳ ଭାସି ଯାଉଛି' ନିରୂପାୟ ହୋଇ ସେ ଝୁଣ୍ଟିଆଙ୍କୁ ସାଙ୍ଗକରି ଗଛମୂଳେ ଜଗି ବସିଲେ । ରାତି ବେଶି ହେବାରୁ ସ୍ୱାଙ୍କୁ ଦେଖି ସୁନାର ଫୁଲ ଫୁଟିଥିବା ଡାଳ କହିଲେ—

ଆମେ ସାତଭାଇ ସାତ ଅରଜୁନ ଭଉଣୀ ପାଟଳୀ ଫୁଲ,
ଆମ ବାପାଙ୍କର ମନ୍ତ୍ରୀ ଆସିଛନ୍ତି ଦେବାକ ନଦେବା ବୋଲ

ଏକଥା ଶୁଣି ପାଟଳୀ ଗଛ କହିଲା—

'ଭାଇରେ ମଞ୍ଜେ ରହୁ ମୂଳ ଆମର ସ୍ୱର୍ଗେ ଲଗୁ ଡାଳ
ଆମେ ଥାଉ ଥାଉ ଆମର ମା ପୋଛେ ଘୋଡ଼ାଶାଳ ।'

ଏହା ଶୁଣି ଆଠଟିଯାକ ଡାଳଯାଇ ପୂର୍ବପର ଆକାଶରେ ଲଗିଲା । ମନ୍ତ୍ରୀ ଦେଖି ଅବାକ୍ ହୋଇ ଆସି ରଜାଙ୍କୁ ଘଟଣା ସବୁ ଜଣାଇଦେଲେ ।

ଏକଥା ଶୁଣି ରଜା ବଡ଼ ବିସ୍ମିତ ହୋଇ ଭାବିବାରୁ ବିଦୂଷକ କହିଲା ହଜୁର୍ ! ମନ୍ତ୍ରୀଙ୍କ କଥା ଶୁଣି ଭାବୁଛନ୍ତି କ'ଣ ? ଏ'ତ ଭେଟିଆ ମନ୍ତ୍ରୀ ନୁହଁନ୍ତି ଯେ ମିଛସତ ଯୋଡ଼ି ଫଳେଇ ନେଇ ପଳେଇ ଯିବାକୁ ବସିଛନ୍ତି । ପାଠୁଆ ମନ୍ତ୍ରୀ ମିଛ କହିବେ କାହିଁକି । ଏ ସନ୍ଦେହ ହେଲେ ତ ଯଦି ନିଜେ ଦେଖି ବଡ଼ ଆସ୍ତୁ ନାହାଁନ୍ତି । କଥାରେ ଅଛି—
'ଯାହା ନ ଦେଖିବ ଦୁଇ ନୟନେ ପରତେ ନଯିବ ଗୁରୁ ବଚନେ ।'
ରଜା କହିଲେ ଠିକ୍ କହୁଛ, ଆଜି ରାତିରେ ମୁଁ ନିଜେ ଯାଇ ବୁଝିବି, ଏହା କହି ସେଦିନ ରାତିକି ରଜା ନିଜେ ମନ୍ତ୍ରୀ ଝୁଣ୍ଟିଆଙ୍କୁ ନେଇ ଗଛ ମୂଳରେ ଜଗି ବସିଲେ ।

ଅଧୈର୍ଯ୍ୟ ହେବାରୁ ଗଛ ଗୁଡ଼ିକ ପୂର୍ବପରି ଉତ୍ତର କଲେ ।

'ଆମେ ହାତଭାଇ ସାତ ଅର୍ଜୁନ, ଭଉଣୀ ପାଟଳୀ ଫୁଲ
ଫୁଲ ଥାଇଁ ବାପା ନିଜେ ଆସିଛନ୍ତି ଦେବାକୁ ନଦେବା ବୋଲି,

ଏକଥା ଶୁଣି ପାଟଳୀ ଗଛର ଡାଳଟି ଉତଳା ପରି ଦୋହଲି କହିଲା...

'ଭିତରେ ମଞ୍ଜେ ଥାଉ ମୂଳ ଆମର ସ୍ୱର୍ଗେ ଲଗୁ ଡାଳ
ଆମେ ଥାଉଁ ଥାଉଁ ଆମର ମା ପୋଛେ ଘୋଡ଼ାଶାଳ' ।

ଏକଥା ଶୁଣି ଗୁହୁଁ ଗୁହୁଁ ମୁହୂର୍ତ୍ତକ ଭିତରେ ଗଛର ଅଗ ଯାଇ ପଚାଶ ହଜାର ହାତ ଉଚ୍ଚ ଆକାଶରେ ଲଗିଲା । ଗଛ ଗୁଡ଼ିକର କଥା ଶୁଣି ଓ ଗଛ ଦେଖି ରଜା ବଡ଼ ଭାବିତ ହେଲେ । କିଛି ସମୟ ପରେ ମନ୍ତ୍ରୀଙ୍କୁ କହିଲେ ମନ୍ତ୍ରୀ ! ଏଥିରେ କିଛି ଗୂଢ଼ ରହସ୍ୟ ଅଛି । ନୋହିଲେ ଏ ଗଛ ଗୁଡ଼ିକ ମୋତେ ଦେଖି ବାପା ବୋଲି କହିଲେ କାହିଁକି । ଆଉ ଆମର ମା ପୋଛେ ଘୋଡ଼ାଶାଳ, କଥା କହୁଛନ୍ତି କାହିଁକି ? ମନ୍ତ୍ରୀ ଚିନ୍ତା କରି କରି କହିଲେ ଆଜ୍ଞା ସେ ତୋଉ ରାଣୀଙ୍କି ହଜୁର ଘୋଡ଼ାଶାଳ ପୋଛୁଉଛନ୍ତି ତାଙ୍କୁ ଡକାଇ ବୁଝିଲେ ହୁଅନ୍ତା ନାହିଁ ? ମନ୍ତ୍ରୀଙ୍କ କଥା ଶୁଣି ରଜାଙ୍କର ଖିଆଲ ହେଲା । ସେଇଠୁ ସେ ଚୁଣ୍ଟିଆ ଓ ମନ୍ତ୍ରୀଙ୍କୁ ପଠାଇ ଘୋଡ଼ାଶାଳରୁ ସାନ ରାଣୀଙ୍କୁ ଡକାଇ ନେଲେ ।

ସାନରାଣୀ ଯିବାରୁ ରଜା ତାଙ୍କୁ ପଚାରିଲେ ଆମର ଏଠି ଆଠଟି ଗଛରେ ସୁନାଫୁଲ ଫୁଟି ଝଡ଼ୁଛି । ବାନ୍ଠାଇମାନେ ଗୋଟେଇ ନେଇ ଯାଉଛନ୍ତି । ଆମେ ଆସିବାରୁ ଗଛ ଗୁଡ଼ିକ ଆକାଶକୁ ବଢ଼ିଯାଇ କାହିଁକି ଏପରି କହୁଛନ୍ତି, ତମେ ଏ ସମ୍ବନ୍ଧେ କିଛି କହିପାରିବ ? ସାନ ରାଣୀ କହିଲେ, ମୁଁ ତ ଘୋଡ଼ା ଲଣ୍ଡି ସଫା କରିବା ଲୋକ, ଗଛ ଗଣ୍ଡି କ'ଣ କହୁଚି ମୁଁ ଜାଣିବି କିପରି ? ଯିଏ ଗଛ-

ହୋଇ କଥା କହୁଛନ୍ତି, ଆପଣ ତାଙ୍କୁଇ ପଚାରନ୍ତୁ ସେମାନେ ହୁଏତ ତାଙ୍କ କଥା କହି ପାରିବେ ।

ଏହା ଶୁଣି ରାଜା କହିଲେ ତୁମେ ସେ ଗଛରୁ ସୁନାଫୁଲ ତୋଳିଆଣ । ରାଣୀ କହିଲେ ମୁଁ ତ ଅଲକ୍ଷଣୀ ବୋଲି ରାଜ୍ୟରେ ଚହଳ ପଡ଼ିଛି ଏବଂ ଆପଣ ମୋତେ ଘରୁ କାଢ଼ିଦେଇ ଘୋଡ଼ାଶାଳ ସୁତର କରଉଛନ୍ତି, ମୁଁ ପୁଣି ସୁନାଫୁଲ ତୋଳିବାକୁ ଯିବ କପରି ? ଯାହାକୁ ଏତେ ଲୋକ ପାରୁନାହାନ୍ତି, ମହାରାଜା ନିଜେ ମଧ୍ୟ ପାରିଲେ ନାହିଁ, ତାଙ୍କୁ ଯଦି ଏ ଅଲକ୍ଷଣୀ ଛୁଇଁ ଆଉ କ'ଣ ରହିବ ? ରାଜା କହିଲେ ମୁଁ ରଜା, ମୋ ଆଦେଶ ତୁମେ ମାନି ଚଳିବାକୁ ବାଧ୍ୟ । ଯାଅ ଫୁଲତୋଳ ଦେଖ କ'ଣ ହେଉଛି । ଏକଥା ଶୁଣି ସାନରାଣୀ ଯାଇ ଯେମିତି ଗୋଟିଏ, ଅର୍ଜ୍ଜୁନ ଗଛକୁ ଛୁଇଁଛି, ସଙ୍ଗେ ସଙ୍ଗେ ସେ ଗଛଟି ଗୋଟିଏ ଯୁବକ ରୂପ ଧରି ଆସି ଆଗେ ରାଣୀଙ୍କି ଓ ପରେ ରାଜାଙ୍କୁ ପ୍ରଣାମ କରି ଛିଡ଼ା ହେଲା । ତା ପରେ ରାଣୀ ଯାଇ ଆଉ ଗଛଟିକୁ ଯେମିତି ଛୁଇଁଛନ୍ତି ସେ ମଧ୍ୟ ସେହିପରି ସୁନ୍ଦର ଯୁବକଟିଏ ହୋଇ ଆସି ଆଗେ ରାଣୀଙ୍କି ପ୍ରଣାମ କରି ପରେ ରାଜାଙ୍କୁ ପ୍ରଣାମ କରି ମୁହଁ ପୋତି ଛିଡ଼ାହେଲା । ଏହି ପ୍ରକାର ରାଣୀ ସାତଟି ଅର୍ଜ୍ଜୁନ ଗଛକୁ ଛୁଇଁବାରୁ ସେ ସାତଟି ଯୁବକ ପାଲଟି ଆସି ରାଣୀ ରଜାଙ୍କୁ ପ୍ରଣାମ କରି ଛିଡ଼ାହେଲେ । ତାପରେ ରାଣୀ ଯାଇ ପାଟଳୀ ଗଛଟିକୁ ଛୁଇଁବାରୁ ସେ ଗୋଟିଏ ଉର୍ବଶୀ ପରି ସୁନ୍ଦରୀ କନ୍ୟା ହୋଇ ଆସି ରାଣୀ ରଜାଙ୍କୁ ପ୍ରଣାମ କରି ମୁହଁ ପୋତି ଛିଡ଼ା ହେଲା ।

ରଜା, ମନ୍ତ୍ରୀ ଓ ରାଣୀ ଗଛରୁ ମଣିଷ ହେବାର ପୁଅ ଝିଅଙ୍କୁ ଦେଖି ଅବାକ୍ ହେଲେ । ରଜା ବିସ୍ମିତ ହୋଇ ପଚାରିଲେ ତୁମେମାନେ କିଏ କେଉଁ କାରଣରୁ ଗଛ ହୋଇଥିଲ, ପୁଣି ରାଣୀ ଛୁଇଁଲେ କାହିଁକି ମଣିଷ ହେଲ ସେ କଥା କୁହ ? ଏହା ଶୁଣି ବଡ଼ ପୁଅ ଯେଉଁଟି ଆଗେ ମଣିଷ ହୋଇଥିଲା । ସେ ଆଗେଇ ଆସି କହିଲା,

ବାପା ! ଆପଣ ଆମର ପିତା, ଇଏ ଆମର ଜନନୀ । ଆମେ ଜନ୍ମ ହେବା ସଙ୍ଗେ ସଙ୍ଗେ ବଡ଼ମା'ମାନେ ମା'ଙ୍କୁ ଧ୍ୱଂସାକର ମା'ଙ୍କ ଆଖିରେ ଅନ୍ଧପୁଟୁଳି ବାନ୍ଧଦେଇ ଆମକୁ ନେଇ ପୋଖରୀ ବନ୍ଧରେ ପୋତିଥିଲେ । ଶୂଳଆଣୀକୁ ଟଙ୍କାରେ ବଶକର କାଠକଣ୍ଢେଇ ମା' ଜନ୍ମ କରିଛି ବୋଲି ଦେଖେଇ ଆପଣଙ୍କୁ ଭୁଲାଇଥିଲେ । ଏହାପରେ ଆମ ସାତଭାଇ ଓ ଭଉଣୀ 'ପାଟଳୀ'କୁ ନେଇ ସେମାନେ ଜଅନ୍ତା ଶିଶୁ କୁ ପୋତି ଦେଇଥିଲେ । ଆପଣ ମଧ୍ୟ ଅବୁଝାମଣା ରଜା, ପାଳବଣ୍ଠା ମନ୍ତ୍ରୀକୁ ନେଇ ବିଚାର ନକରି ମା'ଙ୍କୁ ଘରୁ ତଡ଼ି ଘୋଡ଼ାଶାଳ ପୋଛଉଛନ୍ତି । ଆଚ୍ଛା ବାପା ! ମଣିଷ କୋଉଠି କାଠ କଣ୍ଢେଇ ଆଠଥର ଜନ୍ମ କରେ ? ତାଙ୍କ କଥାରେ ରଜା ନୀରବ ରହିଲେ । ବିଦୂଷକ କହିଲେ ସତେ ତ । ହଜୁରଙ୍କର କ'ଣ ମୁଣ୍ଡ ବିଗିଡ଼ିଥିଲା ନା କ'ଣ ? ଯେତେ ସବୁ ରଜା ଅବୁଝା, ପିଲାଏତ ଠିକ୍ କହୁଛନ୍ତି । ତେଲଗଣ୍ଡି ଘୋଡ଼ା ବେଇବା କଥାପରି ଏଟା ହେଲା ହେ ।

ମହିଆଁ ପୁଅ କହିଲା ଦିନେ ରାତିରେ ହର ପାର୍ବତୀ ଆସି ଯୋଗକୁ ସେଇଠି ବସିବାରୁ ଜଗତ ଜନନୀଙ୍କର ଦୟା ହେଲା । ସେ ଶିବକୁ ଆମର ସବୁ ଘଟଣା କହିବାରୁ ଶିବ କହିଲେ ଏଗୁଡ଼ିକ ଅବୋଧ ଶିଶୁ ନିର୍ଦ୍ଦୋଷୀ । ତେଣୁ ଏମାନେ ଗଛ ହୋଇ ସୁନାର ଫୁଲ ଫୁଟାନ୍ତୁ । ଯେତେବେଳେ ଏହାଙ୍କର ଜନନୀ ଯାଙ୍କୁ ପରଶ କରିବେ ସେତେବେଳେ ଏମାନେ ମନୁଷ୍ୟ ହୋଇଯିବେ । ଏହାକହି ଶିବ ଏଇ ଜାଗାରେ କୋଉ ଦାଂବାଇ ସିଞ୍ଚିଦେଲେ କେଜାଣି ଆମେ ଗଛହୋଇ ଉଠିଲୁ । ଅବକା ଆମର ମା' ଆମକୁ ଛୁଇଁବାରୁ ଆମେ ନରରୂପ ପାଇଲିଲୁ । ରଜା ଖୁସିହୋଇ ପୁଅ ଝିଅଙ୍କର ଶିର ଚୁମ୍ବନ କରି କହିଲେ ବାପା ! କାଳସ୍ୟ କୁଟିଳା ଗତିଃ । ସ୍ୱୟଂ ଜଗତକର୍ତ୍ତା ରାମଚନ୍ଦ୍ର ମଧ୍ୟ କାଳର କୁଟିଳ ଗତିରେ ଭୁଲି ମାୟାମୃଗ ପଛରେ

ବୃନ୍ଦାବାକୁ ପଡ଼ିଥିଲ—"ହେମ କୁରଙ୍ଗୀ ନାଚ ପୂର୍ବବାର୍ତ୍ତା, ନଶ୍ରୁୟତେ ବେଦ ପୁରାଣ ଶାସ୍ତ୍ରେ । ତଥାପି ତୃଷ୍ଣା ରଘୁନନ୍ଦନସ୍ୟ, ବିନାଶ କାଳେ ବିପରୀତ ବୁଦ୍ଧିଃ" ସେହିପରି ମୋର ବୁଦ୍ଧିଭ୍ରମ ହେଉ ତୁମର ମା'ଙ୍କୁ ଶାସ୍ତି ଦେଇଛୁ । ବର୍ତ୍ତମାନ ସମସ୍ତେ ରାଜପୁରୀକୁ ଚାଲ । ଏହା କହି ରାଜା ସମସ୍ତଙ୍କୁ ନେଇଗଲେ, ରାଣୀଙ୍କୁ ନେଇ ସିଂହାସନରେ ବସାଇଲେ ।

ତହିଁ ଆରଦିନ ସଭାକଲେ, ବଡ଼ରାଣୀଙ୍କୁ ଦରବାରକୁ ଡକାଇ ତାଙ୍କ କୃତ କର୍ମର ଶାସ୍ତି ପାଇଁ ଗୋଟିଏ ଗାତ ଖୋଳାଇ ସେହି ଗାତରେ ତଳେ କଣ୍ଟା ଉପରେ କଣ୍ଟା ଦେଇ ଛ'ରାଣୀ ପୋତି-ଦେଲେ । ବୁଝିଲୁ ଅବୋଲକରା । ଛ'ରାଣୀ ଯୋଉ ଗାତରେ ପଶି ମରିଥିଲେ ଏଇଟା ସେଇ ଗାତ । ଏହା କହି ଗୋସେଇଁ, ଝୁଲିରେ ଅଙ୍ଗୁଳି ପୁରାଇଲେ । ଏ ଗପଟି ୪।୫ ବର୍ଷ ଆଗେ ମୋ ଦେଠେଇ କୁନ୍ତଳାଦେବୀ ମୋତେ କହିଥିଲେ ।



## କୃତ୍ତିବାସଙ୍କ କୀର୍ତ୍ତିକଥା

ତା ପରଦିନ ସକାଳେ ଗୋସେଇଁ ଅବୋଲକରା ଦିହେଁ ଦକ୍ଷିଣ ଦିଗକୁ ତୀର୍ଥ କରିବାକୁ ବାହାରିଲେ । କିଛିଦୂର ଯିବାପରେ ଦୟାନଦୀ ପଡ଼ିଲା । ନିକଟରେ ପାଂଚଲାଶିଖା ପାହାଡ଼ । ଦୟାନଦୀ କୁଳୁ କୁଳୁ ହୋଇ ବହି ଚାଲିଛି । ନଈଟିର ଜଳ ବଡ଼ ପରିଷ୍କାର ଦେଖି ଗୋସେଇଁ କହିଲେ ଅବୋଲକରା ! ଆଜ ବଡ଼ ଖରା ହେଲଣି ଏଇ ନଈକୂଳ ଧର୍ମଶାଳାରେ ରହିଯିବା । ତୁ ଟଙ୍କାଟିଏ ନେଇଗଲୁ ପାଖରେ କୋଉଠି ବଜାର ପାଇବୁ ତ ଦେଖେଇ ସଉଦା କରି ଆଣିବୁ । ଅବୋଲକରା ଗଣ୍ଠିଲିରଖି ଟଙ୍କା ଧରି ବଜାର ଆଡ଼େ ଗଲା । କିଛିଦୂର ଯିବାପରେ ଦେଖିଲା ଗୋଟିଏ ଜାଗାରେ ଛୋଟ ଛୋଟ ପଥର କେତେ ଗୁଡ଼ିଏ ଜମାହୋଇ ଗୋଟିଏ ପାହାଡ଼ ଆକାର

ହେଲଣି । ସେଇ ବାଟରେ ଯୋଉ ବାଟୋଇ ଯାଉଚନ୍ତି ସେମାନେ ଗ୍ରେଟ ପଥରଟିଏ ଗୋଟେଇ ନେଇ ସେଇ ଜାଗାରେ ଥୋଇ ଜୁହାର ହେଇ ଯାଉଚନ୍ତି । ସେଠୁ ଦେଖି ହାଟ ସଉଦା ଆଣି ଅବୋଲକରା କହିଲା ଗୋସେଇଁ ! ତମେ ଟିକେଇ ଖାଉଥା ମୁଁ ଘରକୁ ଯାଉଚି ।

ଗୋସେଇଁ ଶୁଣି ବିରକ୍ତ ହୋଇ କହିଲେ ଆରେ । ପୁଣି କୋଉଠି କ'ଣ ଦେଖିଲୁ ନା କ'ଣ ? ଅବୋଲକରା କହିଲା ହଁ ଗୋସେଇଁ । ବଜାରକୁ ଯିବାବେଳେ ଦେଖିଲି ବାଟୋଇମାନେ ଗୋଟିଏ ବଉଳ ଗଛ ମୂଳରେ ଖଣ୍ଡିଏ କରି ଗ୍ରେଟ ପଥର ଥୋଇ ଜୁହାର ହୋଇ ଯାଉଚନ୍ତି । ଜାଗାଟି ଗୋଟିଏ ପାହାଡ଼ ଭଳି ହୋଇ-ଗଲାଣି ପଥର ପଡ଼ି ପଡ଼ି । ମୁଁ ଯାହାକୁ ତା'ର କାରଣ କ'ଣ ପଚାରିଲେ ସମସ୍ତେ କହିଲେ କାରଣ ଆମେ ଜାଣୁନା, ବଧି ଅଛି ବୋଲି ସମସ୍ତେ ପଥରଟି ଥୋଉଚନ୍ତି, ଆମେ ବି ଥୋଉଚୁ । କାରଣ କେହି ଜାଣନ୍ତି ନାହିଁ । ତମେ ଯଦି ଗୋସେଇଁ ତା'ର କାରଣ ନ ବତେଇବ ତା ହେଲେ ତମ ଗଣ୍ଠିଲି ରହିଲା ମୁଁ ଚାଲିଉଚି ।

ଅବୋଲକରା କଥା ଶୁଣି ଗୋସାଇଁ ବିରକ୍ତ ହୋଇ କହିଲେ ଆଚ୍ଛା ପୁଟଖାଉ ପୁଅକୁ ଆଣି ମୁଁ ତ ବଡ଼ ବିପଦରେ ପଡ଼ିଲି । ଖାଲି କ'ଣ ହ୍ୟାପୋ ଅବୋଲକରା ନାଁ ପାଇଚ । ଏହା ଭାବି କହିଲେ କ'ଣ ଆଉ କରିବା । ହଜରେ—ପକା କମ୍ବଳ ରଖ ଛତା, ଅବୋଲକରାରେ ଶୁଣ ସେ କଥା । ଅବୋଲକରା ବସିବାରୁ ଗୋସେଇଁ କହିଲେ ଏ ଜାଗାଟି ନାଁ ଅଭୟ ନଗର । ଏଠାରେ ଅନେକ ଦିନ ଆଗେ କୃତ୍ତିବାସ ନାମରେ ଜଣେ ବ୍ରାହ୍ମଣପଣ୍ଡିତ ରହୁଥିଲେ । ତାଙ୍କ ବାପା ପଣ୍ଡିତ ଥିବାରୁ କୃତ୍ତିବାସଙ୍କର ନାନା ବିଦ୍ୟାରେ ଜ୍ଞାନ ଥିଲା । ପିଲାଦିନେ ନାଟ ଦଳ ଗଢି ସେଥିରେ ସବୁ ବେଳେ ଲାଗିଲେ । କେଣୁ ତାଙ୍କ ଜମିଜମା ଯାହାଥିଲା ତାକୁ

ବଳ କଣି ଖାଉଥିଲେ । ସାଧାରଣ ଲୋକ ଓ ଟିକିଏ ଓଲ ଧରଣର ସେ ଥିଲେ । ହେଲେ ନାନା ଶାସ୍ତ୍ରରେ ତାଙ୍କର ଜ୍ଞାନଥିଲା; ତଥାପି ଉଦାର ଉଦାସ ଭାବରେ ସେ ରହୁଥିଲେ ।

ପାର୍ବତୀ ନାମରେ ତାଙ୍କର ଗୋଟିଏ ପରମା ସୁନ୍ଦରୀ ସ୍ତ୍ରୀ ଥିଲେ । ସେ ଯେପରି ରୂପସୀ, ସେହିପରି ବୁଦ୍ଧିମତୀ ଥିଲେ । ସେ ସମସ୍ତଙ୍କୁ ଆଖ ପାଖରେ ଲୋକ ଦେବୀପରି ମଣୁଥିଲେ । ଦୁଇପ୍ରାଣୀଯାକ ବଡ଼ ପରଉପକାରୀ । କେହି କେହି କୃତ୍ତିବାସଙ୍କୁ ବୋକା ବୋଲି କହନ୍ତି । ଏକଥା ଶୁଣି ମଧ୍ୟ ସେ ନିଜର ମହତ ଗୁଣ ଧରି ରହିଥାନ୍ତି । ଯେଉଁଦିନ ଯାହା ଯୁଟେ ଖଟିଖାଟି ଆଣି କୁଟୁମ୍ବ ପୋଷନ୍ତି । ଶତ୍ରୁ ମିତ୍ରଙ୍କୁ ସମ ଭାବ, ଉଦାର ଚରିତାନାଂ ତୁ ବସୁଦେବ କୁଟୁମ୍ବକମ୍, ମତରେ ସମସ୍ତଙ୍କୁ ସମାନ ମଣି ଦୁଃଖେ କଷ୍ଟେ ଦିନ କାଟନ୍ତି । ତାଙ୍କର ଏହି ଉଦାରତାର ସୁଯୋଗ ନେଇ ବହୁତ ଖଳ ଦୁଷ୍ଟ ଲୋକ ଆସି ତାଙ୍କ ପାଖରେ ଯୁଟନ୍ତି । ତଥାପି ସେ ଚନ୍ଦନ ଯେପରି—

"ମୂଳଂ ଭୁଜଙ୍ଗୈଃ ଶିଖରଂ ବିହଙ୍ଗୈଃ
ଶାଖାଂ ପ୍ଲବଙ୍ଗୈଃ କୁସୁମାନି ଭୃଙ୍ଗୈଃ
ସମ୍ପେଷ୍ଟିତା ଦୁଷ୍ଟଗଣୈଃ ସମସ୍ତାତ୍
ତଥାପି ଚନ୍ଦନ ସୁଶୀତଳୋଽପି ।"

ମୂଳରେ ସର୍ପ, ଅଗରେ ପକ୍ଷୀ, ଡାଳରେ ବାନର, ଫୁଲରେ ଭ୍ରମର ଦ୍ୱାରା ଆବେଷ୍ଟିତ ହେଲେ ମଧ୍ୟ ସେ ତା'ର ମହତ ଗୁଣ ସୁଶୀତଳତା ଓ ସୁବାସ ଦାନ କରିବା ଛାଡ଼େ ନାହିଁ । ସେହିପରି କୃତ୍ତିବାସ ମଧ୍ୟ ଚଳୁଥାନ୍ତି । ଥରେ ଆଖ ପାଖରୁ କେତେକ ଲୋକ ଷଡ଼ଯନ୍ତ୍ର କରି ବାହାରିଲେ । ଏହା ଦେଖି ବ୍ରାହ୍ମଣଙ୍କ ମନ ଛଟପଟ ହେଲା । ସେ ଘରେ ଆସି କେବଳ ମୁଣ୍ଡ କୁଣ୍ଡେଇ ହେବାରେ ଲାଗିଲେ । ତାଙ୍କୁ ଏପରି କରିବାର ଦେଖି ବ୍ରାହ୍ମଣୀ ପଚାରିଲେ କହୋ ! କ'ଣ ଏତେ

ଘବୁଡଛ ? ହରଘଡ଼ି ମୁଣ୍ଡ କୁଣ୍ଡେଇ ହଉଚ ଯେ । ବ୍ରାହ୍ମଣ କହିଲେ ଆହେ ! ସେ ଗାଁ ଏ ଗାଁ କର ବହୁତ ଲୋକ ଗୋଦାବରୀ ଆଦ ତୀର୍ଥ କରିବାକୁ ଯାଉଚନ୍ତି, ଆମର ଯଦ କଛି ଟଙ୍କା ପଇସା ଥା'ନ୍ତା ଆମେ ଯାନ୍ତେ ନାଇଁ ? ପାଠନୀ କହିଲେ ଟଙ୍କା ପଇସା କ'ଣ ମନ୍ଦର ମନ୍ଦୁରରେ ବସି ମନ୍ଦର ବଜାଇଲେ ଖାଳଜୋଇ ପଡ଼ିବ । ହାତ ନ ଖଟିଲେ ପେଟ ଉପାସ ବୋଲ କଥାଅଛି । ତୁମେ ଖଟିବ ନାହିଁ, ଯୁଟିବ କୁଆଡ଼େ ? ଧନ ଅର୍ଜିଲେ ଧର୍ମକର, ଧର୍ମ ପ୍ରାପତ ନରହେବ' ପର । ଧନ ନ ଅର୍ଜି ତୀର୍ଥ କର ପୁଣ୍ୟ ପାଇବ କପର ? ଏକଥା ଶୁଣି କୃତ୍ତିବାସ କହିଲେ ସତ କହୁଚ ବ୍ରାହ୍ମଣୀ । ମୁଁ କାଲ ସକାଳୁ କୋଉଠି କଛି ଟଙ୍କା ପଇସା ରୋଜଗାର ହେବ କ ନାହିଁ ଦେଖିବାକୁ ଯିବ । ଏହା କହ ରହିଲେ ।

ରାତି ପାହିବାରୁ ବ୍ରାହ୍ମଣ ଉଠି ଗାଧୁଆ ସ୍ନାନ କର ଚଟା ପଇତା ହୋଇ ବାହାରଗଲେ । କଛିଦୂର ଯିବାପରେ ଦେଖିଲେ ଜଣେ ସୌଦାଗର ତାର ଶଗଡ଼ ବୋଝାଇ କର ଆଗରେ ଦଶଟା ପଛରେ ଦଶଟା ନେଇ ମଝିରେ ମୁଆର ଚଢି ଯାଉଚ । ତାକୁ ଦେଖି ବ୍ରାହ୍ମଣ ଭାବିଲେ ଏଇ ଯୋଉ ସୌଦାଗର ଯାଉଛି ଯ୍ୟାକୁଇ ଧରୁଚିଲେ ଏ ମୋତେ ନିଶ୍ଚୟ କଛି ଟଙ୍କା ରୋଜଗାର କରିବାର ଉପାୟ ବତେଇ ଦେବ । ଏହାଭାବ ସେ ଯାଇ ସୌଦାଗରଙ୍କ ସଙ୍ଗରେ ଦେଖାକର ଆସିଥିବାର କାରଣ ଜଣାଇଲେ । ତାଙ୍କ କଥା ଶୁଣି ସୌଦାଗର କହିଲେ ଆମର କାର୍ଯ୍ୟ ନ କଲେ ଆମେ କାହାକୁ କଣା କଉଡ଼ିଟିଏ ବି ଦେଉନାହିଁ । ତେବେ ତମେ ଯଦ କହୁଚ ଆମ ସାଙ୍ଗରେ ଚାଲ, ଆମେ ଦେଇଛି, ଆଗରେ ମାସେ ପକ୍ଷେ ରହିବୁ । ସେ'ଠି ତୁମର ଯୋଗ୍ୟତା କ'ଣ ଅଛି ବୁଝିବା, ତା'ପରେ ତମର ଦରମା ଠିକ କର ଦେବା । ସୌଦାଗରଙ୍କ କଥାରେ କୃତ୍ତିବାସ

ସେଠାରେ କିଛି ଦିନ ରହି ନାନା ରକମ ହିସାବ ପତ୍ର କରୁଥାନ୍ତି । ମନ ତାଙ୍କର କାର୍ଯ୍ୟରେ ଏତେ ନିବିଷ୍ଟ ଥାଏ ବାହାର ଘଟଣା ସହିତ ଆଦୌ ସମ୍ବନ୍ଧ ରହେ ନାହିଁ । ତାଙ୍କର କାର୍ଯ୍ୟ କରଣ ଦେଖି ସୌଦାଗର ବଡ଼ ସନ୍ତୁଷ୍ଟ ହୋଇଥାନ୍ତି । ପ୍ରତିଦିନ ସଞ୍ଜବେଳକୁ ତାଙ୍କୁ ଗୋଟିଏ ଲେଖାଁ ଟଙ୍କା ଦିଅନ୍ତି । ଦିନେ ସେଇ ନିକଟ ଦେଇ କେତେ ଗୁଡ଼ିଏ ଲୋକ ଗୋଟିଏ ଶବ ନେଇ ଦାହ କରିବାକୁ ଯାଉଥାନ୍ତି । ସେମାନଙ୍କୁ ଦେଖି ସୌଦାଗର ପଚାରିଲେ ଦାଶେ ! ଏତେ ଗୁଡ଼ିଏ ଲୋକ କାହିଁକି ହରିବୋଲ ଦେଇ ଯାଉଛନ୍ତି । ଦାଶେ କହିଲେ ସେମାନେ ମଶାଣିକୁ ଯାଉଛନ୍ତି ଶବଦାହ କରିବାକୁ । ସୌଦାଗର ତାଙ୍କୁ କହିଲେ,ଆଚ୍ଛା ଆପଣ ଯାଇ ତାଙ୍କୁ ପଚାରି ଆସନ୍ତୁ ଯୋଉ ଶବକୁ ସେମାନେ ଦାହ କରିବାକୁ ନେଇ ଯାଉଛନ୍ତି ସେ ମରିଯାଇଛି ନା ତରି ଯାଇଛି । ସୌଦାଗର କଥା ଶୁଣି କୃତ୍ତିବାସ ଶ୍ମଶାନ ଯାତ୍ରୀଙ୍କ ପାଖକୁ ଗଲେ । ତାଙ୍କ ନିକଟ ହେବାରୁ ଦେଖିଲେ ଗୋଟିଏ ଦରବୁଢ଼ା ପୁରୁଷର ଶବରେ ଫୁଲ ଲୁଗା ସଜେଇ ସଜେଇ ସେମାନେ ନେଇ ଯାଉଛନ୍ତି । ବ୍ରାହ୍ମଣ ଯାଇ ସେମାନଙ୍କୁ କହିଲେ ହେ ଭାଇମାନେ ! ଟିକିଏ ରହିଯିବଟି । ବ୍ରାହ୍ମଣ ଅନେକ ଦୂରରୁ ଦୌଡ଼ି ଆସୁଥିବାରୁ ସେମାନେ ଲକ୍ଷ୍ୟ କରିଥିଲେ । ଇଏ ଡାକକାର ଶୁଣି ଟିକିଏ ରହି ମଠ କରି ପଚାରିଲେ କଅଣ କହୁଛନ୍ତି ? କୃତ୍ତିବାସ ପଚାରିଲେ ଆପଣମାନେ କ'ଣ ନେଇ ଯାଉଛନ୍ତି । ସେମାନେ କହିଲେ ଦେଖୁଛ ତ ଶବ ନେଇ ଯାଉଛୁ ଶ୍ମଶାନକୁ । ପଚାରୁଛ କ'ଣ ? କୃତ୍ତିବାସ କହିଲେ ବୁଝିଲି ଯେ, ହେଲେ ସେ ଲୋକଟା ମରି ଯାଇଛି ନା ତରି ଯାଇଛି ? ତାଙ୍କ ଭିତରୁ ଦି' ଚାରିଜଣ ଟୋକାଲୋକ ଏକଥା ଶୁଣି ଆଖି ଲାଲ୍ କରି ଆସି କହିଲେ ହ୍ୟାପୋ ଅପଯଶିଆ ବ୍ରାହ୍ମଣକୁ ଦେବୁ ଯେ ଦି ପାହାର କସି, ବୋପାକୁ ମଉସା

ବୋଲି ଡାକୁଥିବ । ହ୍ୟାଟେ ଚତୁରା ଆସିଛୁ, ପଚାରିବାକୁ ଲଜ ଲାଗୁ ନାହିଁ ।

ତାଙ୍କ କଥା ଶୁଣି ବ୍ରାହ୍ମଣ ଦଣ୍ଡାହାତ ପଛେଇ ଆସି ଛିଡ଼ା ହେଲେ । ଭାବିଲେ ହ୍ୟାଟେ ମୂର୍ଖ ଗୁଡ଼ାକ ଚଣ୍ଡାଳ ହୋଇ ଯାଇଚନ୍ତି, ବ ଡାଙ୍ଗ କସି ଦେଲେ ମୋ ପିଠିରେ ପଡ଼ିବ କଏ ? ତା ଛଡ଼ା ପଇଡା ମାରୁ ହେବ, ପିଠି ସୁଖସରିବ । ଟୋକା ଗୁଡ଼ାକଙ୍କ ଯୋଉ ମକମକିଆ ବଳ ବୟସ । ଏହାଭାବି ଗମ ଗମ କରି ପଛେଇ ଗଲେ । ସେମାନଙ୍କର ସଙ୍ଗୀ ଜଣେ ଦାଢ଼ିବୁଢ଼ା ଲୋକ ପଛେଇ ପଛେଇ ଆସୁଥିଲେ । ବ୍ରାହ୍ମଣଙ୍କୁ ମାରବରେ ଖୁଣ୍ଟପରି ଛିଡ଼ା ହେବାର ଦେଖି ପଚାରିଲେ କ'ଣ ପଚାରୁଥିଲେ ଗୋସେଇଁ ? ବ୍ରାହ୍ମଣ କହିଲେ ପଚାରୁଥିଲି ଲୋକଟା ମରିଗଲା ନା ତରିଗଲା ? ସେ କଥା ଶୁଣି ଲୋକଟି ଟିକିଏ ଭାବି କହିଲା, ନାଇଁ, ଲୋକଟା ମରି ଯାଇଛି ? ତା'ର ତନପୁଅଯାକ କୋକେଇ କାନ୍ଧେଇ ଗୁଳିଚନ୍ତିପରା । ଏହା ଶୁଣି ଗୋସାଇଁ ଲୋଉଟି ସୌଦାଗରଙ୍କୁ କହିଲେ ନାହିଁ ମହାଜନେ ! ଲୋକଟା ମରି ଯାଇଚି ବୋଲି କହିଲେ ତାକୁ ନେଇ ତା'ର ତନପୁଅ ଓ ଭାଇମାନେ ପୋଡ଼ିବାକୁ ଯାଉଚନ୍ତି । ଏହା ଶୁଣି ସୌଦାଗର ସେହିକ୍ଷଣ ଯୋଡ଼ିଏ ଟଙ୍କା ଦେଇ ତାଙ୍କୁ ବିଦାୟ ଦେଲେ ।

ତ୍ରିତିହାନ ଆସିବା ସମୟଠାରୁ କିଛି ଡେରି ହୋଇଯିବାର ଦେଖି ପତିବ୍ରତା ପାଟଳୀ ଦେଈ ସ୍ୱାମୀଙ୍କ ବାଟଚାହିଁ ରହିଥାନ୍ତି । ଏହିବେଳେ ବ୍ରାହ୍ମଣ ଆସି ତାଙ୍କ ହାତରେ ଟଙ୍କା ଯୋଡ଼ିଏ ଦେଲେ । ହେଲେ ମୁହଁଟିରେ କପରି ଏକ ବିରସ ପଡ଼ିଚି । ସ୍ୱାମୀଙ୍କ ମୁହଁର ଭାବ ଦେଖି ପାଟଳୀ ପଚାରିଲେ କଗୋ ! ଆଜି କ'ଣ ହେଇଚି କି ତମର । ଗୋଟିକରୁ ଯୋଡ଼ିଏ ଟଙ୍କା କିମିତି କୁଆଡ଼ୁ ଆଣିଲ ? କୃତ୍ତିବାସ ଉଦାସ ମୁହଁରେ କହିଲେ ଆଜି ସୌଦାଗରଟା ମୋତେ

ଏମିତି ଅକଲିଆ କାର୍ଯ୍ୟକୁ ପଠାଇଲ ଯେ ଦ'ପଦ ଗାଳି ଶୁଣିବାକୁ ପଡ଼ିଲା ହେ । ପାଠନୀ ପଚାରିଲେ କ'ଣ କରିବାକୁ ପଠାଇଲ କି ? ଆଜ୍ଞେ, ଦଶଜଣ ଲୋକ ଗୋଟିଏ ମଡ଼ା ନେଇ ପୋଡ଼ିବାକୁ ଯାଉଚନ୍ତି । ତାଙ୍କୁ ଦେଖି ସୌଦାଗରଟା ମୋତେ କହିଲା ଗଲ ଦାଶେ । ତାଙ୍କୁ ପଚାରି ଆସିବ ଯୋଉ ମଡ଼ାଟାକୁ ସେମାନେ ପୋଡ଼ିବାକୁ ନେଉଚନ୍ତି ସେ'ଟା ମରି ଯାଇଚି ନା ତରି ଯାଇଚି ? ହ୍ୟାପ ଓଲୁଟା ବୁଝେନି ଯେ ମଣିଷ ନ ମଲେ ତାକୁ କ'ଣ ପୋଡ଼ିବାକୁ ନିଅନ୍ତି । କ'ଣ କରିବ ଟଙ୍କାଟିଏ ଦଉଚି ଯେତେବେଳେ ତା କଥା ମାନି ପଚାରିବାକୁ ଗଲି । ପାଠନୀ କହିଲେ ଗଲିତ ପୁଣି ଗାଳି ଶୁଣିଲ କାହିଁକି ? 'ଆଜ୍ଞେ, ସିଏ କ'ଣ ଗାଳିଦେଲା । ବେଶି ଟଙ୍କାଟିଏ ଦେଇଚି । ତାହେଲେ କିଏ ଗାଳିଦେଲା କହୁଚ ? ସେଇ ଯୋଉ ମଶାଣିକୁ ନେଉଥିଲେ-ମ । ମୁଁ ଯେମିତି ଯାଇ ତାଙ୍କୁ ପଚାରିଲି ଭାଇ ! ମଡ଼ାଟା ମରି ଯାଇଚି ନା ତରି ଯାଇଚି, ଆଉ ସମ୍ଭାଳେ କିଏ । ତାଙ୍କ ଭିତରୁ ଯୋଡ଼ାଏ ଟୋକା ଯୋଉ ରୂପ ଧରି ମୋତେ ବାଡ଼େଇବାକୁ ତଡ଼ି ଆସିଲେନା ଆଉ ଲୋକ ହୋଇଥିଲେ ଲୁଗା ଖରାପକରି ଥା'ନ୍ତାଟି । ମୁଁ ବୋଲି ସମ୍ଭାଳି ଅଇଲି । ତା'ପରେ କ'ଣ ହେଲା ? ହବ ଆଉ କ'ଣ, ତାଙ୍କ ଭିତରୁ ବୁଢ଼ାଟିଏ ଆସି ଟୋକାଙ୍କ ଉପରେ ହେକାରି ହେଲା । ହେଲେ ଅମାନିଆ ଟୋକା କ'ଣ ମାନିବାକୁ ଚାହିଁଲେ । ମୁଁ ଦଶପାଦ ପଛେଇ ଅଇଲରୁ ରକ୍ଷା ନା । ଯା ହେଉ ବୁଢ଼ାଟି କହିଲା ଲୋକଟା ମରି ଯାଇଚି । ନା ପୁଅ ପୁତୁରାମାନେ ତାକୁ ପୋଡ଼ିବାକୁ ନେଉଚନ୍ତି । ସେଇକଥା ଆସି ସୌଦାଗରକୁ କହିବାରୁ ସେ ଅଧିକା ଗୋଟିଏ ଟଙ୍କା ଦେଇଚି । ଏ କଥା ଶୁଣି ପାଠନୀ କହିଲେ—ତମେ ସେମିତି କଥା କୋଉ ଅକଲରେ ପଚାରିବାକୁ ଯାଉଥିଲ । କହ, ତମେତ ପଚାରିଥାନ୍ତ ଯାହାଙ୍କୁ ଦାହ କରିବାକୁ ନେଉଚି ତାଙ୍କର ପୁଅ ଝିଅ ଅଛନ୍ତି କି ନାହିଁ । ଯଦି ଜାଣିଥାନ୍ତ ପୁଅ ଝିଅ ଅଛନ୍ତି, ବୁଝିଥାନ୍ତ

ଲୋକଟି ମରି ଯାଇଚି । ଯଦି ପୁଅ ଝିଅ ନାହାନ୍ତି ଜାଣିଥାନ୍ତି, ତାହାହେଲେ ଲୋକଟା ତରି ଯାଇଚି । ଏତିକି ଟମରି ଅକଲ ହେଲା ନାହିଁ, ଗାଳି ଶୁଣିବା କଥା କହିଲ ।

ପାଟଳୀଙ୍କ କଥା ଶୁଣି ଦାଣେ ଟିକିଏ ଭାବିନେଇ ହସି ହସି କହିଲେ ସତ ସତ ବ୍ରାହ୍ମଣୀ ! ତମେ ଯାହା କହିଚ ଠିକ୍ କଥା । ମୋର ଏତେ ଅକଲ ଆସିବ କାହୁଁ ଯେ ପରୁରିବି । ମୋ ମା ଯଦି ତମପରି ମଣିଷ ହୋଇଥାନ୍ତା ତାହାହେଲେ ସିନା ସାଧାରଣ କଥା ଶିଖେଇଥାନ୍ତା । ସେ'ଟା ତ ଓଳି ଥିଲି, ଓଳି ପୁଅକରି ଥୋଇ ଯାଇଛି । ଶାସ୍ତ୍ରରେ ଅଛି ପରା—'

'କଥା ଛଳେନ ବାଳାନାଂ ନୀତିସ୍ତଦିହ କଥ୍ୟତେ'

ମା ମାନେ କଥା କହିବା ଭିତରେ ପିଲାମାନଙ୍କୁ ନୀତିଶିକ୍ଷା ଦେଇ ଥା'ନ୍ତି । ଆଗୁ ହଉ ଏବେ ଗୁଳ, ଗଣ୍ଡାଏ ଖିଆମିଆ କରିବାକୁ ଦବି । ପୁଣି କଛୁଦିନ ପରେ ସଉଦାଗର ଦେଖିଲେ କେତୋଟି ଗାଈଙ୍କ ପିଲା ଗୋରୁପଲ ନେଇ ଚରଇବାକୁ ଯାଉଚନ୍ତି । ତାଙ୍କୁ ଦେଖି ସଉଦାଗର କହିଲେ ବୁଢ଼ିବାପେ ! ଆପଣଯାଇ ଏଇଯୋଡ଼ି ଗାଈଙ୍କ ପିଲା ଗୋରୁ ନେଇ ଯାଉଚନ୍ତି ତାଙ୍କୁ ପରୁରି ଆସନ୍ତୁ ଗାଈ ଗୋରୁ ଚଳର ମୁଣ୍ଡ ଅଛିକି ନାହିଁ । ଯଦି ନାହିଁ କହିବେ ତାହାହେଲେ ନେଇକି ଆସିବ, ଯଦି ଅଛି କହନ୍ତି, କେତୋଟି ଅଛି ବୁଝି ଆସିବ ।

ଏକଥା ଶୁଣି ଦାଣେ ଟିକିଏ ବିରକ୍ତି ପ୍ରକାଶ କଲେ, ହେଲେ ସେଦିନ ଟଙ୍କାଟାଏ ଜାଗାରେ ଦୁଇଟଙ୍କା ପାଇଚନ୍ତି । ସେ ଲୋଭରେ ଆଉ ସୁନ୍ଦକରିର ମୋହ ହେତୁ ପ୍ରତିବାଦ ନକରି 'ଆଜ୍ଞା' କହି ବାହାରିଗଲେ । ଯାଉ ଯାଉ ଭାବିଲେ ଲୋକଟାକୁ କ'ଣ ଭୂତ ଧରିଛି କି । ଅଜଣିଆ କଥା କହି ପଠାଉଚି ମୋତେ । ଏମିତି ଭାବି

ଭାବ ଯାଇ ଦେଖିଲେ ପିଲା ଗୁଡ଼ାକ ଗୋରୁ ଗୋଠକୁ ଚାଲକୁ ଛାଡ଼ି ଦେଇ ବରଜନ ଗଛ ମୂଳରେ ଗୋଟି ଡାବକ ଖେଳୁଚନ୍ତି, ବାଗ ପଞ୍ଚାଏ କଡ କଡ଼ି ଖେଳରେ ବ୍ୟସ୍ତ ଅଛନ୍ତି । ଏଇବେଳେ କୃତ୍ତିବାସ ଯାଇ ପଚାରିଲେ ହଇରେ ପିଲା ଟିକଏ ରହିବଟି । ପିଲଙ୍କ ଭିତରୁ ଯେଉଁମାନେ ଦେଖୁଥିଲେ ସେ କହିଲେ କ'ଣ କହୁନା, ନ କହି କ'ଣ ପଳଉଚ ? ତହୁଁ କୃତ୍ତିବାସ ପଚାରିଲେ ଆଚ୍ଛା ତମର ଏଇ ଗାଈ ଗୋରୁ ମୁଣ୍ଡ ଅଛୁ ? ସେଇଠୁ ସେ ପିଲା କହିଲେ ମୁଣ୍ଡ ନାହିଁତ କ'ଣ ଗାଣ୍ଡିରେ ଚରୁଚନ୍ତି ? ଆଉ ଗୋଟିଏ 'ଗୁଟିଡାବଳିଆ ପିଲା କହିଲା ଆରେ ଦେଖୁଚୁ କ'ଣ ବା, ଡାବକ ଦେଇଚ ଗୋଟାଏ ଗୁଣ୍ଡି ତା ଉପରକୁ କଟି ଦବୁ ଯେ ଦାଦକୁ ବୋପା ଡାକ ପକେଇବ, ଚଉରିଆଟାକୁ କହୁଚୁ କ'ଣ ? ଦାଣଙ୍କୁ ଆଉଜଣେ କହିଲା ଆରେହେ ଛ' ଦଉଡ଼ିଆ ବ୍ରାହ୍ମଣ ବୁଢ଼ା ! ତୁ ଗୁରୁ ନ ଦେଖିଚୁ ବୋଲି କ'ଣ ଗୋରୁ ଦେଖିନୁ । ଯା, ଯା, ନୋହିଲେ ଏଇ ପାଞ୍ଚଣକୁ ଅନେଇ କଥା କହ । ଆଉ ଗୋଟିଏ ପିଲା କହିଲା କହୁଚୁ କ'ଣବା ମାରଣା ଷଣ୍ଢଟାକୁ ତ ଲଗେଇ ଦବୁ ସେ ବୁଝେଇ ଦବ ମଜା ।

କୃତ୍ତିବାସ ଦେଖିଲେ ଏ ଯୋଉ ଖେଚଡ଼ା ପିଲା, ଏମାଙ୍କର ତ ଗୁରୁ ଲଘୁ ଜ୍ଞାନ ନାହିଁ । ତାଙ୍କ ଖେଳ ଝୁଙ୍କରେ ରହିଚନ୍ତି । ବେଶି କଥା କହିଲେ ଯଦି ଦ' ଡାଙ୍ଗ ବସି ଦିଅନ୍ତି ବା ମାରଣା ଷଣ୍ଢକୁ ହୁରୁଡ଼େଇ ଦିଅନ୍ତି କରବ କଅଣ । ଭଲେ ଭଲେ ନିଜ ଇଜ୍ଜତ ନେଇ ପଳେଇବା ଭଲ । କଥାରେ ଅଛୁ 'ଆରେ ସଖୀ ଆପଣା ମହତ ଆପେ ରଖି' ଏଇ ଚିନ୍ତାକରି ଯାଇ ସୌଦାଗର ପାଖରେ ପହଞ୍ଚିଲେ । ମୁହଁଟି ବିରସିଆ ଦିଶୁଥାଏ ।

ସୌଦାଗର କୃତ୍ତିବାସଙ୍କ ମଉଳିଆ ମୁହଁ ଦେଖି ପଚାରିଲେ ଚିନ୍ତାଏ କ'ଣ କହିଲେ, ଆପଣ ବୁଝି ଆସିଲେ କ'ଣ ଦାଣେ ?

କୃତ୍ତିବାସ ଦାସେ ମୁହଁ ଭାରି କରି କହିଲେ ଆପଣ ଯୋଉ ଅକଲିଆ କଥା କହି ବୁଝି ଆସିବାକୁ ପଠେଇଲେ ଆଜ୍ଞା ! ଭାଗ୍ୟ ବଳରୁ ବଞ୍ଚି ଅଇଲି, ନୋହିଲେ—। ସୌଦାଗର ମୁରୁକି ହସି କହିଲେ ପିଲାଏ ଶୁଣି ରାଗିଲେ କି ? ଦାସେ କହିଲେ—ରାଗିଲେ କ'ଣ ଆଜ୍ଞା, ଏକବାରେତ ନିଆଁ ବାଣ ପାଲଟି ଗଲେ । କହିଲେ ଆରେ ହେ ଚତୁର ବ୍ରାହ୍ମଣ ! ମୁଣ୍ଡ ନାହିଁତ କ'ଣ ସେଗୁଡ଼ା ଗଣ୍ଡିରେ ଚରୁଚନ୍ତି ? ଗୋଟାଏ ପିଲା କହିଲା ଆରେ ମାରଣା ଷଣ୍ଢଟାକୁ ତ ହୁରୁଡ଼େଇ ଦବୁ ବୁଢ଼ା ଦାଦକୁ ବୋପା ଡାକ ପକେଇବ । ଆଉ ଗୋଟାଏ ପିଲା ପାଞ୍ଚଣ ଦେଖେଇ କହିଲା ଏଙ୍କୁ ଶିଙ୍ଘି ଚୂନା । ସିଧାବାଟ ଦେଖି ପଳା । କୁହନ୍ତୁ ନାହିଁ ଆଜ୍ଞା, ଯୋଉ—

ବାଧାଦେଇ ସୌଦାଗର କହିଲେ ବୁଝିଲି । ଆଚ୍ଛା ଅବକା ଆପଣ ଘରକୁ ଯା'ନ୍ତୁ । ଏହାକହି ସୌଦାଗର ଯୋଡ଼ାଏ ଟଙ୍କା ତାଙ୍କୁ ଦେଇ ବିଦାୟ କଲେ । କୃତ୍ତିବାସ ଟଙ୍କା ଦୁଇଟି ଧରି ଘରକୁ ଆସିଲାବେଳେ ଭାବ ହଉଥାନ୍ତି, ମନ ଦୁଃଖରୁତ ସୁଖ ମିଳିଲା, ପୁଣି ଘରେ ବ୍ରାହ୍ମଣୀ ଶୁଣି କ'ଣ କହୁଛି ଦେଖାଯାଉ । ଏମିତି ଭାବ ଭାବ ଘରେ ଯାଇ ପହଞ୍ଚିଲେ ।

ପ୍ରତିଦିନଠାରୁ ଆଜି ସଅଳ ପହଞ୍ଚିବାରୁ ସ୍ୱାମୀଙ୍କୁ ଦେଖି ପାଟଳୀ ଚମକି ଉଠିଲେ । ପାଖକୁ ଆସି ପଚାରିଲେ କିହୋ ! ଆଜି କ'ଣ ହେଲା କି ? ମୁହଁ ହରଷିଆ ଦିଶୁଚି, ପୁଣି ଏତେ ସଅଳ ଆସିଲଣି ଯେ । କୃତ୍ତିବାସ ଟଙ୍କା ଯୋଡ଼ିକ ତାଙ୍କ ହାତକୁ ଦେଇ କହିଲେ କୁହନା ବ୍ରାହ୍ମଣୀ, ସୌଦାଗରଟା ଆଜି ଯୋଉ ବେବାଗରେ ମୋତେ ପକେଇଥିଲା, ତୁମେ ଟଙ୍କା ନେଲ କ'ଣ ତା ବଦଳରେ ଖଣ୍ଡା ଖୋଲି ହୋଇଥାନ୍ତ । ପାଟଳୀ ବିସ୍ମିତ ହୋଇ ପଚାରିଲେ ପୁଣି କ'ଣ କହିଥିଲେ ସେ ? କୃତ୍ତିବାସ କହିଲେ ଆଜି ସେହି ରକମ

ଅକଳଆରେ ପ୍ରଣି ପକାଇ ଥିଲଚି । ହ୍ୟାପୋ ବଣିଆ ହେଲେ ଯାହା ହୁଏ । ପାଠ ପଢିଛୁ, ଧନ ଅଛୁ, ବଳ ଅଛୁ ଦାହରେ, ସବୁ ଗୁଡ଼ାକ ଅକାର୍ଯ୍ୟରେ ଲଗାଉଚ ପର । ଶାସ୍ତକଥା ଶୁଣିନାହିଁ—

"ବିଦ୍ୟା ବିବାଦାୟ ଧନମ୍ମଦାୟ,
ବଳଂ ବପୁଷା ପର ପୀଡ଼ନାୟ"

ଅକୁଳୀନ ଲୋକର ବିଦ୍ୟା ହେଲେ ବିବାଦ କରିବାରେ ଲାଗେ, ଧନହେଲେ ନାଚ, ବାଚ, ମଦ, ମାଂସ ବିଳାସରେ ଲଗେ । ବଳହେଲେ ଅପରଙ୍କୁ ପୀଡ଼ାଦେବା, ଗୁଣ୍ଡା ଗିରିରେ ଲଗେ । ଏହି ତିନୋଟି ଯାହା ପାଖରେ ଏକତ୍ର ହୋଇ ରହିବ, ସେ ଯେ କୌଣସି ଲୋକ ସଙ୍ଗରେ ଶତ୍ରୁତା କରି ପୀଡ଼ା ଦିଏ । ପାଠକର୍ତ୍ତା କହିଲେ ତାହାତ ବୁଝିଲି, ହେଲେ ତମକୁ ଆଜ କ'ଣ ବିବାଦ କଲେ କୁହ । କୃତ୍ତିବାସ କହିଲେ ଆଜ ଗୋଟେ ଗାଈ ନେଇ ଗାପୁାଳ ପିଲ ଯାଉଥିଲେ । ତାଙ୍କୁ ଦେଖି ମଦୁଆଟାର ଯେ କୋଉ ମଗଜ, ଗଜେଇଲ, କହିଲ ବାଣେ ! ଗଲ ସେଇ ଗାପୁାଳଙ୍କୁ ପଚ୍ଛରି ଆସିବ ତାଙ୍କ ଗୋରୁ ପଲରେ ମୁଣ୍ଡ ଅଛୁକ ନାହିଁ । ଥିଲେ, କେତୋଟି ବୁଝି ଆସିବ । ଦେଖିଯୋ ମୂର୍ଖଟାର ଏତେକ ଅକଲ ନାହିଁ ଯେ ଗୋରୁଙ୍କର ମୁଣ୍ଡ ନ ଥିଲେ ଚରିବୁଲ କରନ୍ତେ କେମିତି ? ମୋତେ ପଚ୍ଛରିବାକୁ ପଠେଇ ଦେଲ ପର । ପାଠକର୍ତ୍ତା କହିଲ ତମେ ଯାଇ କ'ଣ ପଚ୍ଛରିଲ ? ଆହେ ମୁଁ ଚାକରିକ ଚାହିଁ ଯାଇ ଗାପୁାଳ ପିଲଙ୍କୁ ପଚାରିଲ । ସେଗୁଡ଼ାକ ଯୋଉ ଅପମାନ ଦେଲେ ନା, କ'ଣ କହିବ ବ୍ରାହ୍ମଣୀ ! ଭାଗ୍ୟକୁ ଆଗରୁ ଚାଣକ୍ୟ ବୁଢ଼ା ମନା କରିଛୁ "ବଞ୍ଚନଂ ଚାପମାନଂ ଚ ମତିମାନ୍ନ ପ୍ରକାଶୟେତେ" ଅପମାନ ହେବା କଥା ନ କହିବାକୁ ନୋହିଲେ—" । "ଅନ୍ୟ ଲୋକଙ୍କୁ ଯିନା କହିବ ନାହିଁ ମୋତେ କ'ଣ କହିବ ନାହିଁ ? ଆହେ, ମୁଁ ଯେମିତି ଯାଇ ପଚାରିଲି ହାଇରେ

ପିଲେ, ତୁମ ଗୋରୁପଲ ଗୋଠରେ ମୁଣ୍ଡ ଅଛୁ ? ଯୋକେ କହିଲେ ମୁଣ୍ଡ ନାଇଁତ କ'ଣ ଗାଣ୍ଡିରେ ଚରୁଛନ୍ତ । ଗୋଟିଏ ବାକୁଙ୍ଗା ପିଲ କହିଲ ଚତୁରିଆ କଥା କହିବୁତ ମାରଣା ଷଣ୍ଢକୁ ହୁରୁଡ଼େଇ ଦେବ ଯେ ବୋପାକୁ ଦାଦ ଡାକ ପକେଇବୁ । ଆଜ ଗୋଟାଏ ଦୋଷୀ ପିଲ ପାଞ୍ଚଣ ଦେଖେଇ ଶାସେଇଲଟି ।

ପାଠକୀ ଲେଟିଏ ପାଣି ଆଣି ଗୋଡ଼ ଧୋଇବାକୁ ଦେଇ କହିଲେ—ଦକାଳ ପାଖେଇଲଣି, ପୁଣି ସେମିତ ଗାଳ ଶୁଣିବା ବୁଦ୍ଧି କର ଯାଇଥିଲନା । କହୋ ! ତମେତ ଯାଇ ଗାଈଆଳ ପିଲଙ୍କୁ ପଚାରିଥାନ୍ତ ତମ ଗୋଠରେ ଅଣ୍ଡିରା ଷଣ୍ଢ କେତେ ଅଛନ୍ତି ।

ସେମାନେ ତମକୁ ଗୁରୁମଣି ଗୋରୁ ଗଣି ବତେଇଥାନ୍ତେ । ତାହା ନ କରି ତମେ ଏମିତ ଅକଳିଆ କରି ପଚାରୁଥିଲ କେମିତ ? ଗାଈ ମାଈ ଏମାନଙ୍କୁ ତ ମୁଣ୍ଡ କାହିଁ ଏକଥା କ'ଣ ଜାଣି ନଥିଲ । ଗାଈ ମାଈ ଗୁଡ଼ିକ ଧରଣୀ ପରି ଧରିବେ । ବେଶିହେଲେ ଦଶଟାରୁ କୋଡ଼ିଏଟା, ଅଣ୍ଡିରା ପୁରୁଷର କୋଟି କୋଟି ସୃଷ୍ଟି କରିବାର କ୍ଷମତା ଅଛି । ସେଇଥିପାଇଁ ତାଙ୍କୁ କହନ୍ତି ମୁଣ୍ଡ । ଗଣ୍ଡ ଘରକୁ ନମୁଣ୍ଡିଆ ଘୋଳ କହନ୍ତି—ଏ କଥା କ'ଣ ଶୁଣି ନଥିଲ ତମେ ? ପାଠକୀଙ୍କ କଥା ଶୁଣି କୃତ୍ତିବାସ ମୁଣ୍ଡ କୁଣ୍ଡେଇ କହିଲେ ସତ ଗୋ ବ୍ରାହ୍ମଣୀ ! ସବୁ ଜାଣେ, ଅଥଚ ଏଇ ଅକଲ ଟିକକ କାର୍ଯ୍ୟବେଳେ ଆସେନାହିଁ । ଏଇଟା ମୋର ବଦଖୋଇ ।

ତହିଁ ଆରଦିନ କୃତ୍ତିବାସ ହସ ହସ ମୁହଁ କରି ଯାଇ ସୌଦାଗର ପାଖରେ ପହଞ୍ଚିବାରୁ ସୌଦାଗର ପଚାରିଲେ କହୋ କୃତ୍ତିବାସ ! ମୁହଁଟି ବଡ଼ ହରଷ ଦିଶୁଛି ଯେ । ଘରଣୀ ଘରେ ପିଠା ପଣା କରିଥିଲେ ନା କ'ଣ ? କୃତ୍ତିବାସେ କହିଲେ ନାଇଁ ଆଜ୍ଞା ! ଆପଣ ଯେ ଏତେ ଗହନରୁ କଥା କହି ପାରନ୍ତି ମୁଁ କ'ଣ ଜାଣିଥିଲି

କ । ଯୋଉଁଠାକ ଯାକ ସିନା ଘରଣୀ ମୋତେ ବୁଝେଇ ଦେଲେ ।
ନୋହିଲେ ତ—ମୃଦୁହସି ସୌଦାଗର ପଚାରିଲେ କ'ଣ ବୁଝେଇଦେଲେ
ସେ । ଆଜ୍ଞା, ପହିଲ୍ କଥାଟି ବୁଝେଇଲ୍—ଯୋଉ ଲୋକ ପୁଅ ଝିଅ
ଥାଇ ମରଯାଏ ସେ ମରଗଲା, ଯାହାର ବଂଶରେ ଆଜ କେହି ପୁଅ
ଝିଅ ବୋଲି ରହିଲେ ନାହିଁ, ସେ ଚରଗଲା । ଦ୍ୱିତୀୟ କଥାଟି
ବୁଝେଇ ଦେଲା, ପୁରୁଷ ଅଣ୍ଡିରାଙ୍କୁ ମୁଣ୍ଡ କହନ୍ତି, ଗୋରୁ ପଲରେ
ଷଣ୍ଢ ହେଉଛି ମୁଣ୍ଡ । ପୁରୁଷ ନଥିବା ମାଇକନା ଘରକୁ ନମୁଣ୍ଡିଆ
ଘର କହନ୍ତି । ସେଇ କଥା ଗୁଡ଼ାକୁ କାଲିଠୁ ବୁଝି ଭାବ ମୋ ମନ
ଖୁସି ହେଉଚି—ଆପଣଙ୍କ ଠେଇଁ ଏତେ ବୁଦ୍ଧି, ଏତେ ଗୁମରରୁ
କଥା ଆଣି କହି ପାରନ୍ତି ।

କୃତ୍ତିବାସଙ୍କ କଥାଶୁଣି ସୌଦାଗରଙ୍କ ମୁହଁରେ କପରି ଗୋଟିଏ
ଭାବଭଙ୍ଗୀ ପଡ଼ିଗଲା । ସେ କିଛି ସମୟ ମଉନ ରହି କହିଲେ
ଦାଣେ ! ଆପଣଙ୍କ ଘରଣୀ ମହୀୟସୀ, ଆପଣ ଏକ ମହାସ୍ଥାନର
ଉଦାରଚେତା । ଆପଣଙ୍କର ସଙ୍ଗପାଇ ମୁଁ ଧନ୍ୟ ହୋଇଚି । ମୋ'ର
ଏହି କେତେଦିନ ସଙ୍ଗରୁ ଧନ ଜନର, ବିଦ୍ୟା ଦନର ଅହମିକା
ଖସି ଯାଇଚି । ବିଷୟ କୁଟିଳ-ବିଷମ ଚନ୍ତା ମୁଣ୍ଡରୁ ଓହ୍ଲାଇ ହୋଇ
ଯାଇଚି । ହେଜ ଆସିଛି—

"ହୀୟତେ ହି ମତସ୍ତାତ ହୀନୈଃ ସହ ସମାଗମାତ୍
ସମୈଶ୍ଚ ସମତା ବିଶିଷ୍ଟୈଶ୍ଚ ବିଶିଷ୍ଟତାମ୍"

ହୀନ ଲୋକ ସଙ୍ଗରୁ ହୀନତା ମିଳେ, ସମାନ ଲୋକ ସଙ୍ଗରୁ
ସାମ୍ୟ ମୈତ୍ରୀ ମିଳେ, ବହୁଗୁଣ ବିଶିଷ୍ଟ ଲୋକର ବୈଶିଷ୍ଟ୍ୟ ଲାଭ
ହୁଏ । ସୁତରାଂ ମୁଁ ଥରେ ଆପଣଙ୍କ ଘରଣୀ ମହୀୟସୀଙ୍କୁ ଦେଖା-
କରିବାକୁ ଚାହେଁ, ତାଙ୍କ ଅନୁମତି ଜାଣିବାକୁ ମୋ ମନ ଅଧୀର
ହୋଇ ଉଠିଲାଣି । ଆପଣ ଯା'ନ୍ତୁ, ତାଙ୍କୁ ମୋର ଇଚ୍ଛାକଥା ଜଣାଇ

ମଜାମଜ ଜାଣି ଆସନ୍ତୁ । ସୌଦାଗରଙ୍କର ଏକଥା ଶୁଣି କୃତ୍ତିବାସ ଲେଉଟିଲେ । ଘରେ ଆସି ବ୍ରାହ୍ମଣୀଙ୍କୁ ସବୁ କଥା କହିବାରୁ ପାଟଳୀ କହିଲେ ସାଙ୍ଗରେ ନେଇ ଆସିଲ ନାହିଁ, କାହିଁ ! ତମେ ମୋ' ମତ ନବାକୁ କୋଉ ଅକଲରେ ଆସୁଥିଲ, ପଞ୍ଚପନ୍ଥୀ ପରି ଗୋଟିଏ ଅଙ୍ଗ । କୃତ୍ତିବାସ ପୁଣି ମୁଣ୍ଡ କୁଣ୍ଡେଇ କହିଲେ ଓଃ ଏଇ ସାମାନ୍ୟ କଥାଟା ମୁଣ୍ଡକୁ ଆସିଲ ନାହିଁ । କହୁ ବ୍ରାହ୍ମଣୀ ! ସିଏ ଯୋଉ ବଡ଼ଲୋକ ତାଙ୍କୁ ଡାକିଆଣି ବସେଇବୁ କୋଉଠି, ଖାଇବାକୁ ଦବୁ କ'ଣ ? ପାଟଳୀ କହିଲେ—ଆମର ଯାହାଅଛି ତାହା ଦବୁଁ । ସିଏ କ'ଣ ବିଶ୍ୱରୂପୀ କୃଷ୍ଣଙ୍କଠାରୁ ବେଶି ବଡ଼ । ସିଏତ ପୁଣି ସୁଦାମା ଦରିଦ୍ର ଘରେ ଯାଇ ଖଦଭଜା ଖାଇଥିଲେ । କୃତ୍ତିବାସ କହିଲେ ସତକହିଚ ବ୍ରାହ୍ମଣୀ ! ସେଇ ଭଗବାନଙ୍କୁ ସ୍ମରଣ କରି ସୌଦାଗରଙ୍କୁ ଡାକ ଆଣିବା । ପାଟଳୀ ଅଭିମାନ କରି କହିଲେ ଯା, ଯା ସୌଦାଗରଙ୍କୁ ତ ଡାକିବାକୁ ଯିବ, କୃଷ୍ଣଙ୍କୁ ଡାକି କ'ଣ ହବ ? ଡାକିଲେ ସେ କ'ଣ ଆସିବେ, ନା ତମ ଘର ସଜେଇ ଦେବେ । କୃତ୍ତିବାସ କହିଲେ କ'ଣ କହୁଚ ବ୍ରାହ୍ମଣୀ ! କୃଷ୍ଣଙ୍କୁ ଡାକିଲେ କ'ଣ ଆମରି ଦୁଃଖ ଦୂର ହେବ ନାହିଁ । ପାଟଳୀ କହିଲେ ଥାଉ ଥାଉ, ଆଉ କୁହନା, ସିଏ ନିଜର ପୁଅ ବିଶ୍ୱ-ଭ୍ରାନ୍ତ କୁଟୁମ୍ବକୁ ମାରି ନିଜ ଘର ବୁଡ଼େଇ ଦେଇ ଯାଇଚି; ସିଏ ଉଠେଇ ଦବ ତୁମ ଘର । ଛାଡ଼, ତମେ ସୌଦାଗର ପୁଅକୁ ଡାକି ଆଣିବାକୁ ଯିବଟି । ଏହା କହି ସେ ଯୋଗାଡ଼ ସଜାଡ଼ କରିବାକୁ ଗଲେ । ଏଣେ କୃତ୍ତିବାସ ସୌଦାଗରଙ୍କୁ ଡାକି ଆଣିବାକୁ ବାହାରି ଗଲେ ।

କୃତ୍ତିବାସଙ୍କୁ ଚଠାଇ ସୌଦାଗର ଉତ୍କଣ୍ଠିତ ହୋଇ ତାଙ୍କୁ ରହିଁ ତମ୍ବୁ ପାଖରେ ବୁଲୁଥାନ୍ତି । ଏଇବେଳେ କୃତ୍ତିବାସ ପହଞ୍ଚି କହିଲେ ଆଜ୍ଞା ମୋ'ର ଭୁଲ ହୋଇଗଲା । ଆପଣଙ୍କୁ ସାଙ୍ଗରେ କାହିଁକି ନେଇ ଗଲିନି ବୋଲି ବ୍ରାହ୍ମଣୀ ବଡ଼ ବେଜାର ହେଉଛି,

ଆପଣ ଅବକା ସ୍ବଳନ୍ତୁ । ସିଏ ଆପଣଙ୍କୁ ଦେଖିବା ପାଇଁ ବାଟ ଚାହିଁ ବସି ରହିଚ । ତାଙ୍କ ଆଗ୍ରହ ଦେଖି ଶୁଣି, ସୌଦାଗର ତାଙ୍କ ସାଙ୍ଗରେ ଆସି ପହଞ୍ଚିଲେ ବେଳକୁ ପାଟଳୀ ଦେଵୀ 'ଆଶା, ବୋଲି ଗୋଟିଏ ପଡ଼ୋଶୀ ଝିଅକୁ ଡକାଇ ତାଙ୍କ ପାଇଁ ପାଣି ପିଢ଼ା ଯୋଗେଇଚନ୍ତି । ନିଜେ ଦରଜା ପାଖରେ ଅପେକ୍ଷା କରି ରହିଛନ୍ତି । ସୌଦାଗର ଦୂରରୁ ଦେଖିଲେ ଯେପରି ଦରିଦ୍ର କୁଟୀରେ ସତ୍ୟଦେବୀ ଅନ୍ନପୂର୍ଣ୍ଣା ଛିଡ଼ା ହୋଇଛନ୍ତି, ଭକ୍ତକୁ ଦର୍ଶନ ଦେବା ପାଇଁ ରୂପ-ଲାବଣ୍ୟର ଝିଟକ ଖଣ୍ଡେ ଦୂରକୁ ଚହଟୁଚି । ହସ ହସ ମୁଖରୁ ଝରି ପଡୁଚି ମଧୁଧାର । ଚାହାଣୀରେ ମମତା, ଠାଣିରେ କରୁଣା, ପାଦତଳେ ଲୋଟି ପଡୁଚି ମାତୃମୟୀଙ୍କ ସ୍ନେହ ପ୍ରୀତି ପବିତ୍ରତା । ମୁହଁକୁ ଚାହିଁଲେ ଉଦ୍ଧତ ମୁଣ୍ଡ ବି ନଇଁ ପଡ଼ିବ ।

ଦୂରରୁ ଲକ୍ଷ୍ୟକରି ଚଳି ଆସି ସୌଦାଗର ତାଙ୍କ ପାଦଧରି ପ୍ରଣାମ କଲେ । ପାଟଳୀ ଦେବୀ ତାଙ୍କୁ ଉଠାଇ ଦେଇ କହିଲେ ବାପା ! ଶୂଦ୍ର ପିଲାଟି ପାଣି ଆଣି ଥୋଇଚି, ଗୋଡ଼ ଧୋଇ ବସ । ବାଧ୍ୟ ପୁତ୍ରଟି ପରି ସୌଦାଗର ଗୋଡ଼ଧୋଇ ପିଢ଼ାରେ ବସିଲେ । ବ୍ରାହ୍ମଣ ଖଣ୍ଡିଏ ପଥରର ରେକାବିରେ କେତେ ଖଣ୍ଡି ଝୁଞ୍ଚୁମର ପିଠା ଗିଲାସେ ଦୁଧ ଆଣି ଖାଇବାକୁ ସୌଦାଗରଙ୍କୁ ଅନୁରୋଧ କଲେ । ମା ହାତରୁ ଖାଦ୍ୟଖାଇ ସନ୍ତାନ ଖୁସି ହେବା ପରି ସୌଦାଗର ଖାଇ ତୃପ୍ତ ହେଲେ । ତାପରେ କହିଲେ ମା ! ମୁଁ ଦାଣ୍ଡକଠାରୁ ଆପଣଙ୍କ ନାଁ, ଗୁଣ ଓ ବୁଦ୍ଧି ବିଷୟରେ ଶୁଣିଚି । ଦାରିଦ୍ର୍ୟ ଦୁଃଖ ସେ ଆପଣମାନଙ୍କ ଗୁଣରୁ ବିଚଳିତ କରି ପାରିନାହିଁ, ଏଇଥିପାଇଁ ମୁଁ ଖୁସି ହୋଇଚି । ବର୍ତ୍ତମାନ ମୁଁ ଆପଣମାନଙ୍କ ଦର୍ଶନ ପାଇ ଦୁଇ ହଜାର ଟଙ୍କା ଦଉଚି ରଖନ୍ତୁ । ଯାହା ଭଲ ବୁଝିବେ ସେହିପରି କାର୍ଯ୍ୟରେ ଲଗାଇବେ । ଏହାକହି ସୌଦାଗର ଦୁଇ ହଜାର

ଟଙ୍କାର ସୁନା ମୋହରଂ ସେ ସ୍ୱାମୀ ସ୍ତ୍ରୀ ଦୁଇ ଜଣଙ୍କ ଆଗରେ ଥୋଇ ଦେଇ ପୁଣି ଭୂମିଷ୍ଠ ପ୍ରଣାମ କଲେ । ପାଠକୀ ଦେଖା କହିଲେ ନାଇଁ ବାପା ! ଆମେ ଗରିବ ଲୋକ । 'ଦରିଦ୍ରକୁ ଲକ୍ଷେ ଟଙ୍କ ପକ୍ଷେକୁ ନଅଣ୍ଡ' ବୋଲି କଥା ଅଛି । ଆପଣ ଏ ଟଙ୍କାକୁ ନେଇଯାନ୍ତୁ । ସୌଦାଗର କହିଲେ ନା' ଯାହାକୁ ମୁଁ ଆପଣଙ୍କ କାର୍ଯ୍ୟରେ ଲଗାଇବେ ବୋଲି ଦେଇଚ ତାକୁ ଆଉ ଫେରାଇ ନେବ ନାହିଁ । ଆପଣ ମାନଙ୍କର ଦାରିଦ୍ର୍ୟ ଜୀବନ ବୋଲି ଯାହାକୁ କହୁଛନ୍ତି ତା ଭିତରେ ଯେ ଏତେ ସରଳତା, ସୌହାର୍ଦ୍ଦ୍ୟ, ଉଦାରତା ରହିଛି, ମୋର ଜଟିଳ କୁଟିଳ ଜୀବନରେ ତାହା ଅନୁଭବ କଲିଣି । ତା ଛଡ଼ା ଆପଣମାନଙ୍କର ଯେଉଁ କରୁଣା ମୁଁ ପାଇଲିଣି, ସେଥିରୁ ମୋର ଦୁଇଲକ୍ଷ ଲାଭ ହେବ । ଶାସ୍ତ୍ରରେ ଅଛି—

"ବିତ୍ତେନ କିଂ ବିତରଣଂ ଯଦି ନାସ୍ତି ଦୀନେ
କିଂ ସେବୟା ଯଦି ପରକୃତୟା ନ ଯତ୍ନଃ ।"

ଧନ ଆସୁକିରି ସେ ଧନରୁ ଯଦି ଦୀନ ଦୁଃଖୀ ନ ପାଆନ୍ତି, ସେବା ମନୋଭାବ ନେଇ ଯଦି ପରୋପକାର, ପର ଯତ୍ନ କରି ନ ହୁଏ ତେବେ ସେ ଧନ ଜୀବନରେ ମହତ୍ତ୍ୱତା କ'ଣ ଅଛି ? ଆପଣମାନେ ଏ ଟଙ୍କାକୁ ଯଥେଚ୍ଛା ବ୍ୟବହାର କରନ୍ତୁ । ଏହା କହି ସୌଦାଗର ବିଦାୟ ନେଲେ, ହେଲେ ସେ ଧନକୁ ସେମାନେ ସୁଖ ଭୋଗରେ ଲଗାଇ ପାରିଲେ ନାହିଁ । ଆଖ ପାଖରେ ଲୋକ ଯେମିତି ଜାଣିଲେ କୃତ୍ତିବାସ ଦାଶେ ଦୁଇ ହଜାର ଟଙ୍କା ପାଇଛନ୍ତି, ସେଇଠୁ କିଏ ଧର୍ମପୁଅ, କିଏ ଧର୍ମଝିଅ, କିଏ ଧର୍ମଭାଇ,କିଏ ଧର୍ମବାପା ଏହିପ୍ରକାର ସମ୍ବନ୍ଧକରି ଅଳ୍ପ ଦିନ ଭିତରେ ତାଙ୍କୁ ଯୋଉ ଦଶା ଥିଲା ସେଇଦଶା ଦେଇଦେଲେ । ମଲା ବେଳକୁ ତାଙ୍କର ମାହାର୍ଦ୍ଦ ସମ୍ବନ୍ଧୀୟ ଜ୍ଞାତ ଥିଲେ ତାରଣହ । ହେଲେ ତାଙ୍କର ନାମ ବନ୍ଧୁ ଦୂରକୁ ବିଖ୍ୟାତ

ହୋଇଥିଲା । ପଥରୁ ଶୁଣି ପଥିକମାନେ ତାଙ୍କୁ ଦେଖିବାକୁ ଆସୁଥିଲେ ସେ ମରିଯିବାରୁ ତାଙ୍କ ସ୍ମୃତିପାଇଁ ପଥିକମାନେ ପଥରୁ ଶୁଣି ପଥର ଖଣ୍ଡିଏ ଖଣ୍ଡିଏ ତାଙ୍କ ସମାଧି ଉପରେ ଦେଉଥାନ୍ତି । ବହୁତ ଦିନ ହୋଇଗଲା, ହେଲେ ସେ ସ୍ମୃତି ନଭୁଲାନ୍ତି । ଏବେ ବି ମୂଳ କାରଣ ନଜାଣି ବାଟୋଇମାନେ ବିଧିରକ୍ଷା କରି ଚାଲୁଛନ୍ତି । ଅବିକା ସେ ସମାଧିର ନାମ ହୋଇଛି ପଥରଶୁଣି । କେତେ ତାଙ୍କୁ ବନଦେବୀ ବୋଲି କହୁଛନ୍ତି । ବୁଝିଲୁ ଅବୋଲକରା ! ସେ ହେଉଛି ସେହି ସ୍ମୃତିପୀଠ । କୃତ୍ତିବାସଙ୍କ ଜାଣି କଳାପରୁ ମାତ୍ର ଦୁଇଟି ଶୁଣିଲୁ । ଆଉ ଶୁଣିଲେ ଶହେବାଡ଼ି ନଅଣ୍ଟ ହେବ ।' ଏହାକହି ଗୋସେଇଁ ଶୋଇବାକୁ ଗଲେ ।



## ଲମ୍ବାନାକୀ କଥା

ତା ପରଦିନ ଗୋସେଇଁ ଅବୋଲକରା ଦିହେଁ ଯାଇ ମାଳବ ଦେଶରେ ପହଞ୍ଚିଲେ । ଯାଉ ଯାଉ ବାଟରେ ଗୋଟିଏ ସୁନ୍ଦର ବଗିଚା ଦେଖିଲେ । ତା ଭିତରେ ପୋଖରୀ ଓ ଧର୍ମଶାଳା ଅଛି । ଗୋସେଇଁ କହିଲେ ଅବୋଲକରା : ଆଜ ରାତିଟା ଏଇଠି ରହିଯିବା । ତୁ ଟଙ୍କା ଗୋଟିଏ ନେଇ ସଉଦା କରିଆଣିବୁ ଯା । ଅବୋଲକରା ଗଣ୍ଠିଲିରୁ ଟଙ୍କା ନେଇ ସହରକୁ ଗଲା । ସଞ୍ଜବେଳକୁ ସଉଦା ଆଣି ଥୋଇ ନିଜର ଲୁଗାପଟା ଗଣ୍ଠିଲି ବାନ୍ଧିବାକୁ ଲାଗିଲା । ଗୋସେଇଁପଚାରିଲେ କିରେ ତୋ ଲୁଗା ବାନ୍ଧୁଚୁ କାହିଁକି ? ଅବୋଲକରା କହିଲା ଗୋସେଇଁ ମୁଁ ସହରକୁ ଯାଇ ଦେଖିଲି ଗୋଟିଏ କାଚଘରେ ଗୋଟିଏ ଅଠର ବର୍ଷ ସୁନ୍ଦରୀ ଝିଅର ମଡ଼ା ରଖାଯାଇଚି । ଝିଅଟାର ଚାରିହାତ ଲମ୍ବା ହେଇଚି, ହେଲେ ତା ନାକଟା ଦଶହାତ ଲମ୍ବା । କାଚଘର ପାଖରେ ଚୁରିଇ ସେ ମଡ଼ାଟାକୁ ରଖି ଲୋକ ଜଗିଛନ୍ତି ।

କାରଣ ପଚାରିବାରୁ ଗୋରଖା ଦଉଆନ୍ତା କହିଲ ନାହିଁ । ପୁଣି ଖଇଜ ଦଳ ମୋ ନାକ ଆଗରେ ଏମିତ ତାଳ ପିଟି ଖାଉଲ ଯେ ମୁଁ ଛୁଙ୍କି ଛୁଙ୍କି ହାଲିଆ ହୋଇଗଲ । ସେହି ଲମ୍ବାନାକା ଝିଅ ମତା କାରଣ ନ ବତେଇଲେ ମୁଁ ତ ଯିବନାହିଁ ଗୋସେଇଁ । ତମ ବାଟ ତମେ ଦେଖ, ମୋ ବାଟ ମୁଁ ଦେଖୁଛି ।

ଗୋସେଇଁ ଝୁଲିମାନ ଥୋଇ କହିଲେ ହ୍ୟାଗୋ ଆଣ୍ଡୁକୋଡ଼ ପୁଅ ତ ଦେଶ୍ ଧନ୍ଦକାର କଥା ଶୁଣୁଚି । ହଉ କ'ଣ କରିବା, ନ କହିଲେ ମନୁଆ ଟା ଯଦି ପକାଇ ଯିବତ ମୁସ୍କିଲ । ଏହାପାଇଁ କହିଲେ ହଉରେ— 'ଖୋଲ ଗଣ୍ଠି ଲ ଟେକ ମଥା,
ଅବୋଲକରାରେ ଶୁଣ କଥା ।

ଅବୋଲକରା ବୋଲମାନ ବସିବାରୁ ଗୋସେଇଁ କହିଲେ— ଏ ଦେଶର ନାଁ ମାଳବ । ସ୍କୁଲ ଲଗି ବସ୍ତର ବୋଲି ରାଜ୍ୟଟିଏ ଅଛି । ସେ ଦେଶରେ ଜଣେ ସୌଦାଗରଙ୍କର ସିଲନାର ଯିଲେଟ ସାଏ ବୋଇତ ଚଳୁଥିଲ । ବଣିଜ କରି ବହୁତ ଧନରତ୍ନ ରଖିଥିଲେ ସୌଦାଗର । ବୁଢ଼ାର ତିନପୁଅ, ବଡଟି ଯୋଗ୍ୟ, ମଝିଆଁ ଟି ଚଳିବା ଭଳି । ହେଲେ ସାନ ବୋଲି ଯୋଉଟି ସାଧବାଣୀର ଗେହ୍ଲାପୁଅ, ସେଇଟି ଗୋଟିଏ ଦଣ୍ଡା ବାଳୁଙ୍ଗା । ପାଠ ନ ପଢ଼ିଲା ନାହିଁ, ଆଠ ପହର ଟଙ୍କା ଚାହିଁଲା । ଷୋହଳ ବର୍ଷଯାଏ ପଢ଼େଇବାକୁ ସୌଦାଗର ବହୁ ଚେଷ୍ଟାକଲା, ଟୋକା କହିଲା ବାହା ହବାକୁ ମନ ହେଲାଣି, ପଢ଼ିବ କ'ଣ ? ବୁଢ଼ୀ ବି ବୁଢ଼ାକୁ କହିଲା ହେ ! ନଶ ଉଠିଲେ ପାଠ ପରା ବିଷ ହୁଏ । ପୁଅ ଆଉ କ ପାଠ ପଢ଼ିବ ? ବରଂ ତା ପାଇଁ ବୋହୂଟିଏ ଦେଖ । ବୁଢ଼ା ଭାବିଲା ସତକଥା, 'ନଶ ଉଠା ପାଠ ଛତ୍ରୁ ଫୁଟା କାଠ' ଏଗୁଡ଼ାକ ଅକାମି, ହେଲେ ଯୋଉ ପୁଅର 'ମାଙ୍କୁ ପୋଷିବାର କ୍ଷମତା ନାହିଁ ତାକୁ ମାଇପ ଆଣି ଦବ କେମିତି ? ଏହା ଭାବି ମନେ ରହିଲେ ।

ହେଲେ ଯୋଉ ଗୋଟିକ ମା'ର ଗେହ୍ଲା ପୁଅ ସେ କ'ଣ ବା ଆଜାଙ୍କୁ ଡର ଚଳବ । ଘରୁ ଟଙ୍କା ଚୋର କର ଖାସି, ଦାସୀ, ଦାରୁ, ମଦ ଖାଇ ବୁଲଲା । ତା ଗତି ଦେଖି ଲଫଙ୍ଗା ଟୋକା ସାଙ୍ଗ ହେଲେ । ଘରୁ ଗହଣା ନେଇ ବନ୍ଧା ଦେଲା । ଏପର ଦେଖି ବୁଢ଼ା ତାକୁ ଗାଳ ଫଜତ ନ କର ଭାବଲେ—

'ଲାଳୟେତ୍ ପଞ୍ଚ ବର୍ଷାଣି ଦଶ ବର୍ଷାଣି ତାଡ଼ୟେତ୍
ପ୍ରାପ୍ତେତୁ ଷୋଡ଼ଶ ବର୍ଷେ ପୁତ୍ରଂ ମିତ୍ର ବଦାଚରେତ'

ବୋଲି ଶାସ୍ତ୍ରରେ ଅଛି । ଷୋଳବର୍ଷ ପୁଅକୁ ହେଲାଣି, ଏବେ ବନ୍ଧୁ ଭଳ ବ୍ୟବହାର କରିବାକୁ ହେବ । ଏହା ଭାବ ବନେ ତନ ପୁଅକୁ ଡାକ କହଲ ହଇରେ ! ପୁଣି ମୁଁ ତ ବୁଢ଼ା ହେଲଣି କାଲି ଯିବ । ତୁମେ ଗୁଡ଼ାକ ହମେସା ଘରପଣା ହୋଇ କୂପମଣ୍ଡୁକ ହେଲ-ନାହିଁ । ମୁଁ ମଲେ ଏ ଆଟକୁ ସାଇତ ସମ୍ଭାଳ ଚଳବ କେମିତ । କଥାରେ ଅଛି—

'ବଦେଶ ଭ୍ରମନା ଆଚ୍ଛା

ଯୁଆନ ମରନା ଆଚ୍ଛା,

ତୁମେ ତନଭାଇ ଆଜଠୁ ବଦେଶକୁ ଯାଅ, ବର୍ଷକ ପରେ କିଏ କେତେ ଅର୍ଜି ଆଣିବ ଦେଖିବା । ନୋହଲେ ବସି ଖାଇଲେ ଦରିଆ ବାଲି ନଅଣ୍ଟ ବୋଲ କଥା ଅଛି । ଏ ଧନ କେତେଦନ କୁଳେଇବ ।

ଏକଥା ଶୁଣି ବଡ଼ ଦୁ ଜଣ ବସ୍ଥିର କଲେ କ'ଣ କରିବା ଆଉ । ବାପା କହୁଛନ୍ତି ଯେତେବେଳେ ଚାଲଯିବା କିଏ ଯାହା ପାରିବା ଆଣିବା । କଥା ଶୁଣି ସାନର ହାଲକ ଶୁଖିବାକୁ ବସିଲା, ହେଲେ କରିବ କଅଣ ? ଭାଇମାନଙ୍କ ସାଙ୍ଗରେ ନାକ କାନ ମଳ ଧଳ ବାହାରିଗଲା ।

ତନଭାଇ ଏକ ସଙ୍ଗରେ କଛି ଦୂର ଯିବାପରେ ଗୋଟିଏ ନିଛକ ବାଟ ପଡ଼ଲା । ସେଇଠି ବଡ଼ଭାଇ କହଲା, ଏଇଠୁ ତନ

ଭାଇ ଉତ୍ତରବାଟରେ ଯିବା । ଯିଏ ଯୋଉ ବାଟରେ ଯିବ ଆଗେ ଯାଅ ମୁଁ ପଛକୁ ଯିବି । ଏହାଶୁଣି ସାନକୁ ମଝିଆଁ କହିଲା ତୁ ଆଗେ ଯା, ତା ପରେ ମୁଁ, ମୋ ପରେ ଭାଇ ଯିବେ । ସାନ ସେଇଠୁ ଅନେକ ଭାବି ଉତ୍ତର ବାଟରେ ଗଲା । ମଝିଆଁ ଗଲା ପୂର୍ବକୁ । ବଡ଼ଲାଗି ରହିଲା ଦକ୍ଷିଣବାଟ—ସେ ସେଇ ବାଟରେ ଗଲା ।

ଏହିପରି ବଡ଼ ଆଉ ମଝିଆଁ ଦୁହେଁ ଦୁଇ ଦିଗକୁ ଯାଇ ବାଣିଜ୍ୟ ପାଇଁ ଚେଷ୍ଟା କଲେ । ଆଗେ ଚାକିରି କରି କିଛି ପଇସା ଜମେଇ ଜଣେ କଲା ପରିବା ବେପାର, ଜଣେ କଲା ମାଛ ବେପାର । ଏହିପରି କରି କିଛି କିଛି ଟଙ୍କା ବାପା ପାଖକୁ ପଠାଇଲେ । ସାନଟା କିନ୍ତୁ ଯାହା ଅର୍ଜିଲା ପେଟକୁ ନଅଣ୍ଟ ହେଲା । ଅର୍ଜିବା ଖାଇ କେତେବେଳେ କେମିତି ଚୋରିକରି ବି ଖାଇଲା । ଶେଷକୁ କୋଉଠି କେମିତି ଧରା ପଡ଼ିଲା, ଧରିବା ଲୋକ ଛେଚି ଦେଲେ ଗଣ୍ଡାକେତେ । ଗଣ୍ଡା ଗୋଇଠା ଖାଇ କେତେ ଜାଗା ବୁଲି ବୁଲି ଏକବାରେ ହାଲିଆ ହୋଇ ପଡ଼ିଲା । କିନ୍ତୁ ଘରକୁ ଆସିବାର ଯୁ ନାହିଁ । ବାପା ତ କହିଛି, ଅର୍ଜି ଲୋଡ଼ି ନିଜେ ଚଳ । କରିବ କ'ଣ ? ଏକଣି ସିନା ଠେଲା ପଡ଼ୁଚି, ନୋହିଲେ ତ ଗେହ୍ଲା ହୋଇ ଘରେ ଥିଲା । ଏମିତି ନ ଖାଇ ନ ପିଇ ଭଗବାନଙ୍କୁ ଡାକି ବୁଲିଲା । ମନରେ ଦୃଢ଼ତା କଲା, କୀଟପତଙ୍ଗ ପାଇଁ ଯଦି ବଞ୍ଚିବାକୁ ଭଗବାନ ଦାନା ଦେଇଚନ୍ତି, ମୋ ପାଇଁ ବି ଦେଇଥିବେ । ଯଦି ପାଇବି ତ ଖାଇବି ନଇଲେ ତାକୁଇ ଡାକି ମରିଯିବି । ଏମିତି ଦୃଢ଼ମନ ଧରି ଆଗେଇ ଗଲା । କିଛିଦୂର ଯିବାପରେ ଦେଖିଲା ଜଣେ ସାଧୁ ବସି ଧ୍ୟାନ କରୁଚନ୍ତି । ତାଙ୍କ ପାଖରେ ଯାଇ ବସିବାରୁ ସାଧୁ ଧ୍ୟାନ ଭାଙ୍ଗି ପଚାରିଲେ କ'ଣ ଚାହିଁ ? ଏ ଟୋକା ତାଙ୍କୁ ସବୁକଥା କହିଗଲା । ତା କଥା ଶୁଣି ସାଧୁ କହିଲେ ଠିକ୍ ନାକ ସିଧା ଚାଲି ଯା, ଆଗରେ ନୃସିଂହ ଦେବଙ୍କ

ମନ୍ଦିର ଭେଟିବୁ । ସେଇଠି ବହୁତ ଜ୍ଞାନୀ ବୁଢ଼ା ଅଛନ୍ତି, ସେହିମାନେ ତୋତେ ଅର୍ଥମାର୍ଗରେ ବୁଦ୍ଧି ଦେବେ । ଆମେ ଧର୍ମ ଅର୍ଜିବା ଲୋକ, ଧନ ଅର୍ଜିଲା କଥା ଜାଣୁ ନାହିଁ । ସେଇଠୁ ସେ ନାକ ସିଧାକରି ଆଗେଇ ଗଲା ।

ଏହିପରି ଦୃଢ଼ତା ଧରି ବହୁ ବାଟ ଗଲା । କେତେ ପାହାଡ଼ କେତେ ନଦୀ, ହାତୀ ବାଘ ଭାଲୁ ବାରହା ସବୁ ଭେଟିଲା, ପାରେଇ ଗଲା । ଏକାଗ୍ରତା ଥିବା ହେତୁ କେହି କିଛି କଲେ ନାହିଁ । ଏହିପରି ଯାଇ ଯାଇ ଶେଷକୁ ଦେଖିଲା ଆଗରେ ଗୋଟିଏ ବଡ଼ ନଦୀ ଖର ସୁଅରେ ହାତୀ ଘୋଡ଼ା ଭାସି ଭାସି ଯାଉଛନ୍ତି । ଏଣେ ବର୍ଷା ବି ହେଉଛି । ଘୁରିଆଡ଼େ ଅନ୍ଧାର, ସାପ କହୁଛି ମୁଁ ବଡ଼ । ବେଙ୍ଗ କହୁଛି ମୁଁ ବଡ଼ । ହେଲେ ଟୋକାର ଏକାଗ୍ରତା ଅଛି । ସେ ସାଧୁଙ୍କ କଥାମାନ ନାକ ସିଧା ନଦୀ ଭିତରେ ପଶିଗଲା । ପାଣି ସୁଅ ବେଶି ବଢ଼ୁଚି । ଉକ୍ତେଜିତ କହିଚନ୍ତି—

'ନାରୀ, ନଦୀ, ନିଆଁ, ନାଗ, ନରେଶଙ୍କୁ ନିରନ୍ତରେ ଥିବ ଦକା
ନିମିଷ ମାତ୍ରକେ ଉତ୍ପୋଧ ଛାଡ଼ି ଏ ନରତେ ପାରନ୍ତି ଓକା' ।

ନଦୀ କଣ ଦେଇବ ଧ୍ୟାନକୁ । ସୁଅ ତୋଡ଼ରେ ଭସେଇ ନେଲା ବହୁତ ଦୂର । ହେଲେ ଟୋକା ତା ଦୃଢ଼ତା ଛାଡୁନାହିଁ । ଏମିତି କିଛି ଦୂର ଭାସିଯିବା ପରେ ଦେଖିଲା ଗୋଟିଏ କଦଳୀ ଗଛ ଭାସି ଆସୁଛି । ଅକୂଳରେ କୁଟା ଖିଅର ଭରସା ପରି ଟୋକା ତାକୁ ଯାବୁଡ଼ ଧରି ଚଢ଼ିଗଲା ତା ଉପରେ । କଦଳୀ ଗଛତ ବୁଡ଼େ ନାହିଁ । ତା ଉପରେ ଚଢ଼ି ଟୋକା ଯାଉ ଯାଉ ଦେଖିଲା ଗୋଟାଏ ନ ଦେଖିବା ଫଳ ଭାସି ଆସୁଚି । ତାକୁ ଦେଖି ଖାଇବ ବୋଲି ସେ ହାତ ବଢ଼େଇ ଉଠେଇ ନେଲା । ଏତେ ତ ଭୋକରେ ପେଟ ଜଳୁଚି । ତିନ ଦିନର ଉପାସକୁ ଆହାର ମିଳିଛି ଆମ୍ଭଙ୍କୁ । ଏହା ଭାବି ଯେମିତି ଫଳଟାକୁ

ନେଇ ଶୁଙ୍ଘିଚ ଆଉ ସମ୍ଭାଳେ କିଏ ? ତା ନାକଟା ଏକବାରେ ବଣହାତ ବଢିଗଲା ।

ନାକ ବୋଲି ଯୋଉଁ ଚିଜ, ସେଟା ବଢିଗଲେ କାହାର ବା ମନଦୁଃଖ ହୁଏନାହିଁ । ଟୋକା ନାକଟି ଧରି କାନ୍ଦି କାନ୍ଦି ବୁଲିଲା । ଏଇବେଳେ ପାଖ ଦେଇ ଆଉ ଗୋଟିଏ ଫଳ ଭାସି ଆସିଲା । ତାକୁ ଦେଖି ଟୋକା ଧରିଆଣି ଭାବିଲା ଏଟାକୁ ଶୁଙ୍ଘି ଦେଖେ । ଧ୍ୟା ଭାବି ସେଟାକୁ ନେଇ ଯେମିତି ନାକ ପାଖରେ ଲଗେଇଚ, ପୂର୍ବପରି ତା ନାକଟା ହୋଇଗଲା । ସେଇଠୁ ଖୁସି ହୋଇ ସେ ଭାବିଲା ଆରେ ଧ୍ୟାଙ୍କଠେଇ ଏମିତି ଗୁଣ ଅଚ୍ଛିନା । ଏ ଯୋଡ଼ାକ ତ ମୋର ବଡ଼ କାମରେ ଲାଗିବ, ଏକଥା ଭାବିରି କଦଳୀ ଭେଳା ସାହାଯ୍ୟରେ ଆସି ନଦୀ କୂଳରେ ପହଞ୍ଚିଲା ।

କଥାରେ ଅଚ୍ଛି 'ଯାହାକୁ ରଖିବେ ଅନନ୍ତ, କି କରିପାରେ ବଳବନ୍ତ' ସେହି ପ୍ରକାର ଭଗବାନ ତାକୁ ଉଦ୍ଧାର କରିଦେଲେ । ଏଣୁ ଟୋକା ଫଳ ଦୁଇଟିକୁ ଯତ୍ନରେ ରଖି ଯାଉଥାଏ । ଶେଷରେ ଯାଇ ସହରରେ ପହଞ୍ଚିଲା । ସେଠିଯାଇ ଏଣେତେଣେ ବୁଲିବୁଲି କରୁ କରୁ ସଞ୍ଜବେଳକୁ ଯାଇ ରଜାଘରେ ହାଜର । ସେଠି ତ ସବୁବେଳେ କଡ଼ା ପହରା କରିବ କ'ଣ ? ଏମିତି ଭାବୁ ଭାବୁ ସଞ୍ଜପରେ ରଜା ଉଆସରେ ବାଇନାଚ ଆରମ୍ଭ ହେଲା । ଲୋକେ ସବୁ ଠେଲାପେଲା କରି ବାଈ ନାଚ ଦେଖିବାକୁ ଛୁଟିଲେ । ସେଇ ସାଙ୍ଗରେ ଇଏ ମଧ୍ୟ ତାଙ୍କ ମଝିରେ ପଶି ଛୁଟିଲା । ପାଇକ ଜଣେ ଅଚହ୍ନା ଲୋକ ଦେଖି କହିଲା ଆରେ ହେ ତୁ କିଏ କୋଉଠୁ ଅଇଲୁରେ । ଆଉ ଜଣେ ପାଇକ କହିଲା ଛାଡ଼, ସେ'ଟା ଗୋଟିଏ ଦରିଦ୍ର, କିଏ କୋଉଠୁ ଆସି ବାଈନାଚ ଦେଖିବାକୁ ଯାଉଚ, ତାକୁ ପୁଣି କିଏ କଣା । ଏମିତି ଶୁଣି ଟୋକା ଭିତରକୁ ଯାଇ ବାଈନାଚ ଦେଖିବ କ'ଣ, ଖୋଲା ମେଲା ପାଇ ଏକବାରେ ଯାଇ ରାଣୀ–

ହଂସପୁରରେ ହାଜର । ସେଠାକୁ ଯାଇ ଛାତକୁ ଯିବାର ସିଢ଼ି ଉପରେ କେତେଗୁଡ଼ାଏ ପୁରୁଣା ଗନ୍ଧ ଗେଜେଇ ଦେଖି ସେଇଥିରେ ଲୁଚି ରହିଲା ।

ଏଣେ ତ ଭୂପାଳଆଣୀ ବାଈ ଆସି ନାଚୁଚି । ରଜା ପ୍ରଜାଠାରୁ ଅମଲା ଫଉଜ ମଉଜରେ ବ୍ୟସ୍ତ, ପାଟରାଣୀଠାରୁ ପାଟରାଣୀ ଯାଏ ହସ କୁରୁଳ ପକାଉଚନ୍ତି । ବାଈ ନାଚ ବାଇ ବଢ଼େଇଲାଣି ସମସ୍ତଙ୍କର । ମଦ ପିଆରେ ମସଗୁଲ ରଜା ମନ୍ତ୍ରୀ । ଯେତେ ନିଶା ବଢିଲା ସେତେ ନିଶା ବଢିଲା । ରଜା ଉଠି ଢୋଳେଇ ଢୋଳେଇ ଶୋଇବାକୁ ଗଲେ । ରଜା ଯିବାରୁ ମଜା ଭାଙ୍ଗିଲା । ମନ୍ତ୍ରୀଙ୍କୁ ହୁକୁମ ହେଲା । ବାଈକୁ ରାଜା ଉଆସରେ ଶୁଆଇ ରଖ । ନିଶା କମିଲେ ରାଜା ତା ସଙ୍ଗରେ କଥା କହିବେ । ସେଇଠୁ ବାଈ ଝିଅଟି ଯାଇ ଗୋଟିଏ ଘର ବାରଣ୍ଡାରେ ଶୋଇଲା ।

ରାତିର ରାତି ହେବାରୁ ସବୁ ଲୋକ ଶୋଇ ପଡ଼ିଲେ । ଏଇବେଳେ ଟୋକା ଆସି ଦେଖିଲା ରାଜା ରାଣୀ ନିଶା ନିଦରେ ଶୋଇ ଘୁଙ୍ଘୁଙ୍ ଘୁଙ୍ଘୁଙ୍ ହେଉଛନ୍ତି । ତହୁଁ ନାକବଢ଼ା ଫଳଟିକୁ ନେଇ ଏ ଟୋକା ରାଣୀ ନାକ ପାଖରେ ଶୁଙ୍ଘେଇଲା । ପୁଣି ରଜା ନାକ ପାଖରେ ଶୁଙ୍ଘେଇଲା । ଦେଖୁ ଦେଖୁ ରଜା ରାଣୀଙ୍କ ନାକ ଯାଇ ଓଗ ଶେଣିରେ ଲାଗିଗଲା । ସେଇଠୁ ଟୋକା ହସି ହସି ଦେଖିଲା ବାରଣ୍ଡାରେ ଗୋଟିଏ ଖଟରେ ସୁନ୍ଦରୀ ବାଈଟି ଶୋଇପଡ଼ିଚି । ତାକୁ ଦେଖି ଟୋକା କହିଲା ମଲା ମଲା ଏଇଦିନରୁ ରୂପର ପସରା ବୁଲେଇ, ଗୁହାଣି ଠାଣିରେ ନାଚି ଚଲେଇ, ଉଏତ ରଜା ମନକୁ ଭୁଲେଇଲାଣି । ପୁଣି ବେଶିଦିନ ଗଲେ ଏ ଟୋକା ଧମାକୁ ପଟେଇ ଖଟେଇ ସବୁ ଲୁଟ କରିନେବ, ଏଥିକୁ ପାନେ ଭଲକରି ଦେବେଇ ଦେବା । ଏଥି ଭାବି ଫଳଟିକୁ ବାଈର ନାକ ପାଖରେ ଲଗେଇଦେଲା, ଦେଖୁ ଦେଖୁ ବାଈଟାର ନାକ ବଢିଗଲା ଏତେ । ଟୋକା ହସି ହସି କହିଗଲା ଶୋଇଥା' ଲୋ ଗାନେଓ୍ୱାଲି ।

ଏହାକନ୍ତି ଯାଇ ଦେଖିଲା ରଜାଙ୍କର ଚଉଦ ବର୍ଷ ଝିଅ ଟେମାଦେଈ ସଖୀଙ୍କୁ ଘେନ ଶୋଇଚି । ଝୋକା ଯାଇ ସେମାନଙ୍କ ନାକରେ ବ ଶୁଙ୍ଘେଇ ଦେଲା । ସେଗୁଡ଼ିକର ନାକ ବ ବଢ଼ିଯାଇ କୋଣେ ମୋଟର ଦଶହାତିଆ ହୋଇଗଲା । ଏଇପରି ନାକ ପବ: ସାରି ଝୋକା ଆସି ଦେଖିଲା ଦରୁଓ୍ୱାନ ପାଇକଟା ଢୋଳଉଚି । ଝୋକା ତା ନାକରେ ବ ଶୁଙ୍ଘେଇ ଦେଲା । ସେଠୁ ଯାଇ ଗୋଟିଏ ଗୁଡ଼ିଆ ଦୋକାନ ପିଣ୍ଡାରେ ଶୋଇ ରହିଲା ।

ରାତି ପାହିବା ବେଳକୁ ରାଜବାଡ଼ି ହୁଲସ୍ଥୁଲ । ରାଜାରାଣୀଙ୍କ ନାକ ଲାଗିଚି ଓପରେ । ରାଜା କହୁଛନ୍ତି 'କି ହେଲାରେ,' ରାଣୀ କହୁଚନ୍ତି 'କହିତ ନୁହଇ ଗୁଡ଼ିଙ୍କରେ' ଏମିତି ହାଲହୋଲ ହୋଇ ଚଢ଼ିବାରୁ ମନ୍ତ୍ରୀ ଆସି ଦେଖିଲେ ପାଇକ ନାକ ଦଶହାତ । ରାଜା ନାକ ବାରହାତ ରାଣୀଙ୍କର ନାକ ଚୌଦହାତ ବଢ଼ିଯାଇଛି । ବାକି ନାକ ଦଶହାତ ଓ ଟେମା ନାକ ଲାଗିଚି ଉପର ମହଲାରେ । ନାକ ହଲାରେ ରାଜବାଟୀ ଦୁଲୁକୁଚି । ମନ୍ତ୍ରୀ ଖବର ପାଇ ଯାଇ ରାଜାଙ୍କୁ ମୁଲାକାତ କରିବାରୁ ରାଜା କହିଲେ ମନ୍ତ୍ରୀ ! କ'ଣ ହେଲା କ'ଣ କରିବା, ନାକ ରୋଗ ତ ଏମିତ ଅଛି ବୋଲି ଶୁଣା ନଥିଲା, ଖାଲି କ'ଣ ମୋ'ର ନାକ—ରାଣୀ ନାକ ଏକବାରେ ଓପରେ ଲାଗିଚି । ନାକ ପୁଡାରେ ମଇଁଷି ଗଳିଯିବା ଭଳି ହେଲାଣି, ତାପାଇଁ ତ ବେଶି ଚିନ୍ତା । ମନ୍ତ୍ରୀ କହିଲେ ଟେମା ନାକ ଆହୁରି ବଢ଼ିଚି ଆଜ୍ଞା । ଏକଥା ଶୁଣି ରାଜା ଶିହରି ଉଠିଲେ । ହେଲେ, ନାକ ଭାରି ପାଇଁ ଉଠିବାର ଯୁ ନାହିଁ । ରାଣୀ ଏଁ ହେଁ ହେଁ ଉଠିଲା ବେଳକୁ ନାକଟା ଓପରେ ଠେସି ଲାଗିଲା । ରାଜା କହିଲେ, ମନ୍ତ୍ରୀ କ'ଣ କରିବା । ଏଟା ଦେଖୁଚି ଦଇବ ଭିଆଣ । ନହେଲେ ବାକି ଲୋକେ ନାସା ରୋଗରେ ବିନାଶ ହୁଅନ୍ତେ । ତମେ ଯାଅ, ରାଜ୍ୟରେ ଯୋଉଠି

ଗୁଣିଆ, ବଇଦ, ଭୁଟ୍କୁଳିଆ ମୁଟ୍କୁଳିଆ ଯିଏ ଅଛ ଆଣି ଆମକୁ ଏ ସର୍ବନାଶିଆ ରୋଗରୁ ମୁକ୍ତ କର । ରାଜକୋଷ ଖୋଲିଦିଅ, ପରୱା ନାହିଁ । ମନ୍ତ୍ରୀ ଏବେ ବଡ଼ ବ୍ୟସ୍ତ ହେଲେ । ସେଠୁ ଆସି ଘୋଷଣା କଲେ ରଜା ରାଣୀଠାରୁ ରାଜବଂଶ ଯାକ ଯୋଉ ନାକ ବଢିବା ରୋଗରେ ପଡ଼ିଚନ୍ତି ତାଙ୍କୁ ସେଥିରୁ ଯିଏ ଭଲକରି ଦେବ ସେ ଲକ୍ଷେ ଟଙ୍କା ପାଇବ ।

ମନ୍ତ୍ରୀଙ୍କର ଘୋଷଣା ଶୁଣି ଦେଶ ବିଦେଶରୁ ବଇଦ ଗୁଣିଆ ଜେନା, ମୁକୁଳିଆ ଭୁଟ୍କୁଳିଆ ଯାଏ ଯୋଉଠି ଥିଲେ ଯଶ ଧନ ଲୋଭକରି ସବୁ ଆସିଲେ । ହେଲେ ସେ ନାକକୁ ଭଲ କରିବ କିଏ ? କିଏ କହିଲା ଦଇବୀ ରୋଗ, କିଏ କହିଲା ରଜାବଂଶ ଏଇ ରୋଗରେ ବୁଡ଼ିଯିବ । ଏମିତି କୁହାକୁହି ହୋଇ ପଳାଇଲେ ସବୁ । ରାଣୀ ସେମିତି କହୁଥାନ୍ତି ଏଁ ହେଁ ମଲି ମଲି । ରଜା କହୁଥାନ୍ତି ହଁ ହଁ ଗଲି ଗଲି । ହେଲେ କଥାରେ ଅଛି—

"ବଳକୁ ସଳଖେ ହଳ ଲଙ୍ଗଳ ଲୋ
ହାଡ଼କୁ ସଳଖେ କୋଡ଼,
ହରଡ଼ା ଫଳକୁ ଗୋଡ଼ ସଳଖଇ
ଖଳକୁ ସଳଖେ ବାଡ଼ ।"

ସେହିପରି ସେ ରୋଗକୁ ଭଲ କରିବାକୁ ସେଇ ରକମ ବଇଦ ଦରକାର ନା, ଗଲା ଗଲି କହିଲେ ଉଠି ପାରିବ ।

ଏମିତି ସବୁ ଘରିଆଡ଼େ ଲୋକ ଛୁଟାଛୁଟି କରୁଥିବାର ଦେଖି ସାଧବ ପୁଅ ଟୋକା ଯାଇ ଖବର ଦେଲା ମନ୍ତ୍ରୀ ସାଙ୍ଗରେ ଦେଖା କରିବ । ଜଣେ ଅର୍ଦ୍ଦଳୀ ଯାଇ ଜଣେଇବାରୁ ମନ୍ତ୍ରୀ କହିଲେ ଡାକିଆଣ । ଟୋକା ଫଳ ଯୋଡ଼ିକୁ କୁଞ୍ଚରେ ମୋଡ଼ି ରଖି ଯାଇ ପହଞ୍ଚିଲା । ମନ୍ତ୍ରୀ କହିଲେ କଥା କ'ଣ ? ସାଧବ ଟୋକା କହିଲା ରାଜା ରାଣୀ ଓଗେର ଯୋଉ ନାକବଢ଼ା ରୋଗରେ ଗଡ଼ୁଛନ୍ତି ମୁଁ

ତାଙ୍କୁ ଅଧଘଣ୍ଟାରେ ଭଲ କରିଦେବ । ମୁଁ ଯାହା ମାଗିବ ତାହା ଦେବାକୁ ହେବ, ଅବଶ୍ୟ ସେ'ଟା ତାଙ୍କ ପାଖରେ ଅଛି । ସେଥିରେ ଯଦି ରଜା ରାଣୀ ରାଜି ହୁଅନ୍ତି ପଚାରି ଆସ । ଏକଥା ଶୁଣି ମନ୍ତ୍ରୀ ତାଙ୍କୁ ସଙ୍ଗରେ ନେଇଯାଇ ରାଜାଙ୍କ ପାଖରେ ଜଣେଇଲେ । ରଜାଙ୍କରିତ ନାକ ଜ୍ୱାଳାରେ କଣ୍ଠାଗ୍ରତ ପ୍ରାଣ । ସେ ଉପର ମୁହଁ ସେମିତି ହୋଇ କହିଲେ ହଉରେ ଟୋକା । ତୁ ଯାହା ମାଗିବୁ ଥିଲେ ନିଶ୍ଚୟ ପାଇବୁ, ଆଗ ଆମକୁ ଭଲ କଲୁ । ସାଧବ ପୁଅ କହିଲା ନାହିଁ ଆଗ ସତ୍ୟ କର, ତୁମ ଜେମାକୁ ମୋ ସାଙ୍ଗରେ ବାହାଦବ । ଏକଥା ଶୁଣି ରାଣୀ କହିଲେ ହଉପଛେ ବାହାଦେବା; ଆଗେ ଆମକୁ ଏଥିରୁ ବଞ୍ଚା । ଇଲେ ବୋଉ ! ମରିଗଲି; ମରିଗଲି, ହେଁ; ହେଁ, କହି ରାଣୀ ପୁଣି କାନ୍ଦି ଉଠିଲେ, ରଜା କହିଲେ ନାସା ରୋଗର ଉତ୍ପନ୍ନ ଏମିତି ନା ମନ୍ତ୍ରୀ ! ଆଚ୍ଛା ହଉରେ ଟୋକା । ଜେମାକୁ ତୋତେ ବାହାଦବୁ, ଆଗେ ଆମକୁ ଭଲକର । ମନ୍ତ୍ରୀ କହିଲେ ଶାସ୍ତ୍ରରେ ଅଛି—

ଆତ୍ମାନାଂ ସତତଂ ରକ୍ଷେ ଦାରୈରପି ଧନୈରପି ।

ହଜୁର ଆଗେ ବଞ୍ଚିଯାନ୍ତୁ । ରଜା କହିଲେ ମନ୍ତ୍ରୀ ପାଣି ଆଣ ମୁଁ ସତ୍ୟ ନିବନ୍ଧ କରି ଟୋକାହାତକୁ ଟେକିଦିଏ । ମନ୍ତ୍ରୀ ପାଣିଆଣିବାକୁ ଗଲେ । ରାଣୀ ପଚାରିଲେ ଟୋକା ତୁ କାଳିଆ ନା ଗୋରିରେ । ଟୋକା କହିଲା ତମ ଝିଅର ନାକମୁଖ କେମିତି ? ରାଣୀତ ଶୁଣିଲେଣି ଜେମା ନାକ ତଳ ମହଲରେ ଲଗିଛି ବୋଲି । ଆଉ କହିବେ କଅଣ ଚୂପ୍ ହେଲେ ।

ଏଣେ ମନ୍ତ୍ରୀ ପାଣି ଆଣି ଦେବାରୁ ରଜା କନ୍ୟା ଦେବେ ବୋଲି ସ୍ୱୀକୃତ କରି ଟୋକା ହାତକୁ ଟେକି ଦେଲେ । ପାଣି ପାଇବାରୁ ସାଧବ ପୁଅ କହିଲା ମନ୍ତ୍ରୀ ମହାଶୟ ! ଖଣ୍ଡିଏ ଚଦର ମୋତେ ଦେଇ ତମେ ଏଠୁ ପଳାଅ । ମନ୍ତ୍ରୀ ଚଦର ଖଣ୍ଡିଏ ଦେଇ

ବାହାର ଆସିବାରୁ ଟୋକା ସେ ଖଣ୍ଡକୁ ନେଇ ରଜାଙ୍କ ଆଖିରେ ଘୋଡ଼ାଇ ଦେଇ ଫଳଟିକୁ ନାକ ପାଖରେ ଧରି ଶୁଙ୍ଘେଇଲା, ସେଥି ସାଥିରେ ଯାହା ତାହା କରି ମନ୍ତ୍ର ପଢ଼ିଲା । ପାଞ୍ଚ ମିନଟ୍ ଗଲାରୁ ଦେଖିଲା ରଜାଙ୍କ ନାକ ଛୋଟ ହୋଇ ଆସୁଛି । ସେଇଠୁ ରାଣୀ ପାଖକୁ ଯାଇ ସେମିତି କଲା, ତା ପରେ ଯାଇ ଜେମାଦେଈଙ୍କ ଭଲ କଲା । ରଜା ରାଣୀ ଭଲ ହୋଇ ଉଠି ଜେମା ନାକ ଦେଖିବାକୁ ଗଲାବେଳକୁ ତା ନାକ ଚଳ ମହଲାରୁ ଓହ୍ଲେଇଲାଣି, ଟୋକା ପାଇକ ତାକୁ ଭଲ କରୁଛି ।

ମନ୍ତ୍ରୀ ଚଳକୁ ଆସି ଟୋକାକୁ ଧରି ଏକାବାର ଜେମା ପୁରକୁ ନେଇଗଲେ । ସେଇଠି ନାହାକ ବ୍ରାହ୍ମଣ ସବୁ ଥା'ନ୍ତି । ବାହାଲଗ୍ନ ବି ସେଦିନ ଥାଏ । ଜେମା ସାଙ୍ଗରେ ବାହାଘର କାର୍ଯ୍ୟ ଆରମ୍ଭ ହେଲା । ରାଣୀ କନକାଞ୍ଜଳି କାର୍ଯ୍ୟ ସାରି ଚଳକୁ ଆସି ଦେଖିଲେ ବାରଣ୍ଡାରେ ନାଚଉଥିଲା ବାଙ୍କ ଶୋଇଛି । ତା ନାକ ଲଗିଚି ଦୋଚାଳକୁ । ସେଇଠୁ ରାଣୀ ଯାଇ କହିଲେ ବାପା ଜୁଆଇଁ ! ଏତେ ଲୋକଙ୍କୁ ଭଲ କଲୁ । ବାଙ୍କ ଝିଅଟିର ମନ୍ଦ କରିବୁ କାହିଁକି ବାପା ? ତା ନାକଟା କମେଇ ଦେ । ଜେମା ବି କହିଲା । ସେଇଠୁ ସାଧବ ପୁଅ ବେଘାକ ଯାଉ ଯାଉ ଲେଉଟି ଆସି ଦେଖିଲା ବେଳକୁ ବାଙ୍କ ଝିଅଟା ଆଉ ଏ ପୁରରେ ନାହିଁ, ନିଃଶ୍ୱାସ ପ୍ରଶ୍ୱାସ ରହି ଯାଇଚି । ମଲାଟାକୁ ଆଉ କରିବ କଅଣ । ରଜା ତାକୁ ରାଜବାଟୀରୁ ଉଠାଇ ଦେଲେ; ପୁରୋହିତ ଭରିତ ଶୁଦ୍ଧ କାର୍ଯ୍ୟ କରି ବାହାଘରରେ ଲାଗିପଡ଼ିଲେ ।

ରଜା ବିଭାକାର୍ଯ୍ୟ ସାରି ଆମ୍ଭି ଗୋଟିଏ କାଚର ଘର ତିଆରି କରାଇ ସେଥିରେ ରସାୟନ ଔଷଧ ଭରି ସେଥିରେ ସେ ବାଙ୍କ ଝିଅର ଶବଟିକୁ ରଖେଇ ଦେଲେ । ସେଇ ଦିନରୁ ସେମିତି ସେ ଝିଅଟାର ଦିହ ରହିଚି କାଚ ଘରେ । ଏଣେ ରଜା ଝିଅକୁ ବାହା ହୋଇ

ଟୋକା ବାପ ପାଖକୁ ଖବର ଦେଲା । ହେଲେ ବୁଢ଼ା ପୁଅ ବୋହୂ ଆଣିବାକୁ ଗଲନାହିଁ । ସାଧବାଣୀ ବୁଢ଼ୀ, ବୁଢ଼ା ଉପରେ ବେଜାର ହୋଇ ପୁଅଘରଇକ ପଠାଇ ପୁଅବୋହୂଙ୍କୁ ଶଙ୍ଖୋଳ ଆଣିଲା । ବୁଢ଼ା ପୁଅବୋହୂଙ୍କୁ ଦେଖି ଗରଗର ହୋଇ କହୁଥାଏ ପେଟ ପୋଷିବାର କ୍ଷମତା ନାହିଁ ପୁଣି ରଜାଝିଅକୁ ବାହାହୋଇ ବୋହୂ ଆଣିଛି । ଏମ୍ନା ପାଉଡ଼ର ପାଇଁ ଧନ କାହିଁ ? ବୁଢ଼ା ପାଟିକୁ ବୁଢ଼ୀ ଚୁପି ଧରି କହିଲା ତୁନ୍ ଚୁପ୍ ରହିବଟି ଆଗ । ବୁଝିଲୁଟି ଅବୋଲକର କାଠଘରେ ଲମ୍ବାନାକୀର ଘଟଣା ସବୁ ? ଏହା କହି ଗୋସେଇଁ ଶୋଇପଡ଼ିଲେ । ଅବୋଲକର ତାଙ୍କ ଗୋଡ ଟିପି ଦେଉଥାଏ । ଏ ଗପଟିକୁ ମୁଁ ଅକ୍ଷୟ କୁମାର ବେନାର୍ଜିଙ୍କ କାହାଣୀରୁ କେତେକ ପଢ଼ିଥିଲି ।



## ଆଠ ଓଲାଙ୍କ ପଥର କଥା

ଅବୋଲକରକୁ ନେଇ ଗୋସାଇଁ ତାମିଲନାଡ଼ରେ ପହଞ୍ଚିଲେ । ସେଠାକାର ଲୋକ ଗୁଡ଼ାକ କଳା ମୁଗୁନି ପଥର ଭଳି । ସେମିତି ରୂପ, ସେମିତି ବେଶ, ସବୁ କାର୍ଯ୍ୟ ଅପରିଷ୍କାର । ତେଣୁ ଗୋସେଇଁ ଗୋଟିଏ ଶିବ ମନ୍ଦିର ପାଖରେ ବସି କହିଲେ ଅବୋଲକର ! ଆଜ ଏଇଠି ରହିବାରେ, ତୁ ବଜାରକୁ ଯାଇ କିଛି ସଉଦା କରି ଆଣେ । ଏଇଠି ଗଣ୍ଡିଏ ରୋଷେଇ କରି ଖାଇ ଶୋଇବା । ଏ କଥା ଶୁଣି ଅବୋଲକର ଗଣ୍ଠିଳି ରଖି ଟଙ୍କାଟିଏ ଧରି ହାଟ ଆଡ଼େ ଗଲା । ସେଠାରୁ ରୋଷେଇ ସଉଦା କରି ଫେରିଲା ବେଳକୁ ଦେଖିଲା ନଈକୂଳ ବଉଳଗଛ ମୂଳରେ ଆଠଟା ପଥର ମୂର୍ତ୍ତି ଥୁଆ ହୋଇଛି ତାଙ୍କୁ ଦେଖି ବାଟୋଇଙ୍କୁ କାରଣ ପଚାରିବାରୁ ସେମାନେ ଯା କଥା ବୁଝି ନ ପାରି ଲଣ୍ଡେ ଏଡ଼ୁ କହି ଚାଲିଗଲେ । ଅବୋଲକର ସେଠାରୁ

ରାଗି ଆସି କହିଲା ଗୋସେଇଁ ତୁମେ ସଉଦା ରଖ, ମୁଁ ଏଇଠୁ ଲେଉଟି ବାଟ ଧରୁଛି । ଗୋସେଇଁ କହିଲେ ଆରେ କ'ଣ ଦେଖିଲୁକି ? ଅବୋଲକରା କହିଲା ମୁଁ ଆସିବା ବେଳେ ବଉଳମୂଳ ନଈକୂଳରେ ଦେଖିଲି ଆଠଟା ପାଷାଣ ମୂର୍ତ୍ତି ବସିଛନ୍ତି । ତାଙ୍କୁ ସେମିତି ଭାବରେ ବସି ଥିବାର ଦେଖି ଯେତେ ବାଟୋଇଙ୍କୁ କାରଣ ପଚାରିଲେ ସେମାନେ ଲଣ୍ଡେ ଏଣ୍ଡୁ କହି ଚାଲିଗଲେ । ତା'ର କାରଣ ଯଦି କହିବ ଗୋସେଇଁ ମୁଁ ରହିବି, ନୋହିଲେ ଲଣ୍ଡେ ଏଣ୍ଡୁକୁ ପଚାରି ପଚାରି ବାହୁଡ଼ିବି ।

ଏହାଶୁଣି ଗୋସେଇଁ ଭାବିଲେ ଏ ଚୂଳ ପଶାକୁ ଆଣିଛି ଭୁଲ କରିଛି । କରିବି ଆଉ କଅଣ, ଏହାଭାବି କହିଲେ ଆଚ୍ଛା, 'ପକା ଆସନ ପୋତି ଛତା ଅବୋଲକରରେ ଶୁଣ ସେ କଥା' । ଅବୋଲକରା ଠିକ୍ ହୋଇ ବସିବାରୁ ଗୋସେଇଁ କହିଲେ—

ଏ ଦେଶର ସୀତାବାଞ୍ଜି ବୋଲି ଗୋଟିଏ ଗାଁ ଥିଲା । ସେ'ଠି ଚନ୍ଦ୍ରଶୁକ୍ଳ ବୋଲିଜଣେ ବ୍ରାହ୍ମଣ ଥା'ନ୍ତି । ତାଙ୍କରବହୁତ ଦିନ ଯାଏ ପିଲା ପିଲି କିଛି ହେଲେ ନାହିଁ । ସେଥିପାଇଁ ବ୍ରାହ୍ମଣୀର ମନ କଥା ମନରେ ମରେ । ଦିନେ ବ୍ରାହ୍ମଣ ତାଙ୍କ ବନ୍ଧୁ ସଙ୍ଗରେ ଆଳାପ କରୁ କରୁ କୌଣସି କଥାରେ ଦାମ୍ଭିକ ହେଇ କହିଲେ ବନ୍ଧୁ—

'କିଂ ସଙ୍ଗମେନ ତନଯସ୍ୟ ଯଦି ନେଷଣୀୟ
କିଂ ଯୌବନେନ ବିରହୋ ଯଦି ବଲ୍ଲଭାୟାଃ' ।

ଅର୍ଥାତ୍ ଯଦି ସ୍ତ୍ରୀ ସଙ୍ଗକରି ସନ୍ତାନ ସୃଷ୍ଟି ନ ହେଲା କିମ୍ବା ଯଦି ଯୌବନ ଲାଭ କରି ପ୍ରିୟା ବା ପ୍ରିୟାର ବିରହ ହେଲା, ତେବେ ସେ ସଙ୍ଗମର; ସେ ଯୌବନର ମୂଲ୍ୟ କ'ଣ ? ଏ କଥା ପଦିକ ସିନା ବନ୍ଧୁଙ୍କୁ କହିଲେ ସେ, ହେଲେ ବ୍ରାହ୍ମଣୀ ଛାତିରେ ବାଜିଗଲା

ଖର ପର । ସେଇଠୁ ସେ ବ୍ରାହ୍ମଣକୁ କହିଲ ଦେଖ, ଆମର ବାହା-ଘର ଅନେକ ଦିନ ହେଲା, ହେଲେ ପିଲପିଲି ହବାପାଇଁ ତମେ ଆଦୌ ଚେଷ୍ଟା କଲ ନାହିଁ । ଗୋଟିଏ ପିଲ ହେବାକୁ ଲୋକେ କୋଟି କୋଟି ଟଙ୍କା ଖର୍ଚ୍ଚ କରନ୍ତି । ତମେ ଶିବ ମୁଣ୍ଡରେ ବି ଦିନେ ହେଲେ ବେଲପତ୍ର ଦି'ଟା ଓ ଜଳ କୁମ୍ଭେ ଦେଲ ନାହିଁ । ମୁଁ କ'ଣ ତମର ସେବାକରି ଦିନ କଟାଇବାକୁ ଏଠିକି ଆସି ଥିଲି ?

ଏକଥା ଶୁଣି ବ୍ରାହ୍ମଣ ଭାବିଲେ ବ୍ରାହ୍ମଣୀର କଥା ଅନୁଚିତ ନୁହେଁ ।

ପୁତ୍ରହୀନଂ ଗୃହଶୂନ୍ୟଂ ଦିକ୍‌ଶୂନ୍ୟସ୍ତ୍ୱନ ବାନ୍ଧବା
ବିଦ୍ୟାହୀନଂ ଆତ୍ମଶୂନ୍ୟଂ ସର୍ବଶୂନ୍ୟଂ ଦରିଦ୍ରତା ।

ଏହା ଭାବି କହିଲେ ଆଚ୍ଛା ବ୍ୟସ୍ତ ହୁଏନା, କାଲିଠୁ ମୁଁ ଶିବପୂଜା କରୁଛି । ଏହା କହି ତହିଁ ଆରଦିନଠାରୁ ଶିବାଷ୍ଟକ ପଢି ଶିବପୂଜା କଲେ । ସେଇ ସାଙ୍ଗରେ ବରୁଣେଇ ଠାକୁରାଣୀଙ୍କ ପୂଜା କଲେ । ଦିନେ ବ୍ରାହ୍ମଣ ଏପରି ଭାବରେ ଡାକିଲେ ଯେ ସେ ଦିନ ଯାଇ ରାତି ହେଲାଣି ବୋଲି ଖିଆଲ ନାହିଁ ।

ସଞ୍ଜ ହେବାରୁ କୈଳାସ ପୁରରେ ଗଞ୍ଜାପର୍ବ ଆରମ୍ଭ ହେଲା । ଉମା ବସି ଭାଙ୍ଗ ବାଟୁଥାନ୍ତି । ଶିବ ଗଞ୍ଜା ଚିଲମଟା ମୁହଁରେ ଲଗେଇଛନ୍ତି, ମାତ୍ର ଏଇବେଳେ ବରୁଣେଇ ଯାଇ କାନ୍ଦି କାନ୍ଦି ପହଞ୍ଚିଲେ । ଶିଳ ପୋତାଟା ଧୋଉ ଧୋଉ ଉମା ପଚାରିଲେ କାଲେ ବରୁଣେଇ କ'ଣ ହେଲାକି ତୋର ? ବରୁଣେଇ ସେମିତ୍ତି ସକେଇ କାନ୍ଦଣା ଶୁଣେଇ କହିଲେ କ'ଣ ହେଲା ? ତମକୁ କ'ଣ ଅଜଣା ଅଛି । ମୋ ଭକ୍ତ ଶିବପୂଜା କରି ମୋତେ ପୂଜାକରି କେତେଦିନ ହେଲା ଥକି ଗଲାଣି । ସେଥିରେ ଶିବ ଟିକିଏ ହେଲେ ଶୁଣୁନାହାନ୍ତି । ମୁଁ ମାଇପି ଲୋକଟା, ତାଙ୍କୁ ପୁଅ ଦେବି କେମିତି ? ଉମା କହିଲେ

ଠିକ୍ତ, ଆମ୍ଭେ ସିନା ମାଇପି ଲୋକ ପେଟରେ ଭରି କୋଡ଼ରେ ଧରିବୁ, ହେଲେ ମୂଳ ବୀଜ ଆମ ପାଖରେ କାହିଁ ? ଆଚ୍ଛା ତୁ ରହ, ମୁଁ କହି ଦଉଚି । ବରୁଣେଇ ଦେଖିଲେ କଥାଟା ବେଶ୍ କାଟ୍ କରୁଚି । ଏଇଥି ପାଇଁ ବୁଦ୍ଧିଆ ଲୋକ, ମନ୍ତ୍ରୀଙ୍କୁ ନ କହି ମନ୍ତ୍ରୀଆଣୀଙ୍କୁ ଧରୁଚନ୍ତି । ଉମା ସିଦ୍ଧି ଗୋଳେଇ ରଖି ଉଠି ଯାଉଥିଲେ । ଶିବ କହିଲେ କହୋ ! ଭାଙ୍ଗ ଭାଣ୍ଡଟା ଦେଇଯାଉନ ଯେ, ଉମା ବିଗିଡ଼ି ଉଠି କହିଲେ ତମକୁ ଆଉ ଭାଙ୍ଗ ଦିଆଯିବ ନାହିଁ । ଏଇ ଭାଙ୍ଗଖିଆ ତମର ଯେତେ ସବୁ ବିଗାଡ଼ୁଚି । ଏଇବେଳେ ଗଣେଶ ନାକ ବଢ଼େଇ ଦଉଥିଲେ ଭାଙ୍ଗ ଭାଣ୍ଡ ଆଡ଼କୁ । ଶିବ କହିଲେ ହାଁ, ହାଁ, ସର୍ବନାଶ । ଏ ପୁଅର ଯେଉଁ ନାକ, ସେ'କ ଭାଙ୍ଗଭାଣ୍ଡ ନଫିଙ୍ଗି ରଖିବ । ଆଣ ଆଣ ହାଣ୍ଡିଟା ଦେଇଯାଅ । ଉମା ଗଣେଶଙ୍କୁ କାଖେଇ ନେଲେ । ଭାଙ୍ଗ ହାଣ୍ଡି ନ ଦେଇ ଚାଲି ଯାଉଥିଲେ । ଶିବ କହିଲେ କହୋ ! ଆଜି ତମର କ'ଣ ହୋଇଛି କି ? ଉମା କହିଲେ ସେଇ ଯେ ସୀତାବାଞ୍ଜୀ ଗାଁର ବ୍ରାହ୍ମଣଟି ତମକୁ ଡାକି ଡାକି ଆଜି ଦିନଯାକ ନ ଖାଇ ନ ପିଇ ହୋକ ଉପାସରେ ପଡ଼ିଚି, ତାକୁ ହବା ନ ହବା କିଛି ଗୋଟାଏ କହୁନା ତାକୁ କହି ନ ଆସିଲେ ଭାଙ୍ଗ ଫାଙ୍ଗ ପାଇବ ନାହିଁ । ଏହାକହି ସେ ଭାଙ୍ଗ ହାଣ୍ଡିଟାକୁ ନେଇଗଲେ । ଶିବ ଦେଖିଲେ ଉପାୟ ନାହିଁ । ଖିଆପିଆ ଏକବାରେ ବନ୍ଦ । କହିଲେ ହଉ ହଉ, ସରକାର ଯେତେବେଳେ ତମ ଯୁଗ କରି ଦେଇଚି, କରିବା କ'ଣ । ଏହାକହି ବାସୁଆ ଷଣ୍ଢଟିକୁ ଡାକି ତା ପିଠି ଉପରେ ବସି ସୀତାବାଞ୍ଜିରେ ପହଞ୍ଚିଲେ । ରାତି ସେତେବେଳକୁ ପାହେ ପାହେ । ବ୍ରାହ୍ମଣଟାର ପିତ୍ତ ଉଗାର ଉଠିଲଣି । ତାକୁ ଦେଖି ଶିବ ପଚାରିଲେ କିରେ ବେଟା । କ'ଣ ଲୋଡ଼ୁଁ ? ବ୍ରାହ୍ମଣ କହିଲେ ପୁଅ ଲୋଡ଼େଁ । ଶିବ ତ ଭାଙ୍ଗ ଖାଇ ନାହାନ୍ତି, ମୁଣ୍ଡ ଠିକ୍ ଥିଲା । ପଚାରିଲେ କେତୋଟି ପୁଅ ନବୁ ? ଗୋଟିଏ ନା ଆଠୋଟି ?

ଗୋଟିଏ ଯବ ନଉ ସେ କୋଟିଏ ପ୍ରାଣୀ ପୋଷିବ । ଆଠୋଟି ନେଲେ ସେଗୁଡ଼ିକ ଓଲ ହେବେ ।

ବ୍ରାହ୍ମଣ ଭାବିଲା ଏକା ଆଖି ଆଖି ନୁହେଁ, ଏକା ସାକ୍ଷୀ ସାକ୍ଷୀ ନୁହେଁ, ପୁଅ କରିବ ଯୋଡ଼, ମାଇପ କରିବ ଗୋଷ୍ଠ' ବୋଲି କଥା ଅଛି । ଗୋଟିଏ ନେଇ କୋଉ କାର୍ଯ୍ୟରେ ଲଗିବ, ଆଠୋଟି ଯବ ମାଗି ମାଗି ଆଣିବେଟି ଆଠସେର । ଗୋଟିକ ପୁଅ କେତେ ଆଣିବ । ଏହା ଭାବି କହିଲା ମୋର ଆଠୋଟି ଲୋଡ଼ା । ଶିବ ତଥାସ୍ତୁ କହି ଗୁଳିଲେ । ବ୍ରାହ୍ମଣ ଘରକୁ ଆସି ବ୍ରାହ୍ମଣୀକୁ କହିବାରୁ ସେ କହିଲା ତମେ ଏମିତି ଓଲବୁଦ୍ଧି କଲ କାହିଁକି ? କହୋ ତମେ କ'ଣ ଜାଣିନାହିଁ ଶତେ ଓଲ ପୁଅଠାରୁ ଗୋଟିଏ ବୁଦ୍ଧିଆ ପୁଅ ଭଲ । ଗୋଟିଏ ଚନ୍ଦ୍ର ଅନ୍ଧାର ରାତିକି ଆଲୁଅ କରେ । କୋଟିଏ ତାରା କ'ଣ କରନ୍ତି ।

'ବରମେକ ଗୁଣୀ ପୁତ୍ରୋ ନ ଚ ମୂର୍ଖ ଶତୈରପି,
ଏକ ଚନ୍ଦ୍ରସ୍ତମୋହନ୍ତି ନ ଚ ତାରା ଗଣେରପି ।'

ହଉ, ମୂଳରୁ ନ ଥିବାକୁ ଯା ହଉ କହି ରହିଲେ । କିଛିଦିନ ବାଦେ ଯୋଡ଼ ଯୋଡ଼ କରି ଯାଆଁଳା ପୁଅ ଚାରି ଯୋଡ଼ା ହେଲେ । ସେ ଗୁଡ଼ାକ ଏକବାରେ ଓଲ । ଯୁଆଡ଼େ ଗୁହିଁଥିବେ ସେଇଆଡ଼େ । ଯାହା କହିଲେ କରିବେ ତା'ର ଓଲଟା, ହେଲେ ବାପ ମା ଯେତେବେଳେ କରିବେ ଆଉ କ'ଣ । ପାଳି ଲାଳି ବଢ଼ାନ୍ତି । ଆଖ ପାଖ ଲୋକ ସେ ଗୁଡ଼ାଙ୍କୁ ଦେଖି ବିରକ୍ତ ହୁଅନ୍ତି । କଥାରେ ଅଛି—

"ଅଣନ ବସନ ଶଯ୍ୟା ରମଣୀ
ସନ୍ତାନ ରହିତେ ଏ ପାଞ୍ଚ ଜାଣି ।
ଆପଣାକୁ ସିନା ଅଟଇ ଭଲ
ଅପରକୁ ତାହା ବିଷର ତୁଲ ।"

ଏମିତି କରି ପୁଅ ଗୁଡ଼ାକ ବଡ଼ ହେବାରୁ ତାଙ୍କର ଚିନ୍ତାରେ ବୁଢ଼ା ବୁଢ଼ୀ ମରିଗଲେ ।

ବୁଢ଼ା ବୁଢ଼ୀ ଯିବାରୁ ଯୋଉଠି ଯାହା ଥିଲା ଏ ଗୁଡ଼ାକ ବସି ଖାଇଦେଲେ । ବୁଦ୍ଧିଆ ଲୋକ ବି ଠକେଇ ନେଲେ । ତା'ପରେ ଠ, ଠା, ଠି । ଦିନେ ଆଠଭାଇ ବିଚାର କଲେ, କରିବା କ'ଣ ? ବଡ଼ କହିଲା ଆମରି ତ ପୁଅ ମାଇପର ଝମେଲା ନାହିଁ । ଗୋଲ ମୂଲଲାଗି ଖାଇବା, ଏହା କହି ସେମାନେ ଯାଇ ଗୋଟିଏ ଘୋଡ଼ା ବେପାରି ବଣିଆ ଘରେ ପହଞ୍ଚିଲେ । ବଣିଆ ଦେଖିଲା ଭାଇଙ୍କୁ ରଖିବା ଭଲ ଖଟିବେ ବେଶି, ନେବେ କମ । ଏହା ଭାବି କହିଲେ ତମେ ଆମର ଘୋଡ଼ା ହେପାଜତ ପାଇଁ ରୁହ । ତାଙ୍କୁ ଖୁଆଇ ଯତ୍ନ କରିବ । ଖାଇ ପିଇ ମଇନା ଉପର ଦି'ଟଙ୍କା କରି ଦବୁ । ଏଗୁଡ଼ାକ ହଉ କହି ରହିଲେ । ହେଲେ ଘୋଡ଼ାଙ୍କ ଯତ୍ନ କ'ଣ ଜାଣନ୍ତି ଯେ କରିବେ । ଘୋଡ଼ାଦାନା ବୁଟ ଚଣା ସବୁ ନିଜେ ଖାଇ ଦିଅନ୍ତି । ଦିନେ ବେପାରି ଯାଇ ଘୋଡ଼ା ତନଖି ଦେଖିଲା ବେଳକୁ ଭଲ ଘୋଡ଼ାଯାକ ବୁଢ଼ାପରି ଦିଶୁଛନ୍ତି । ବେପାରିର ପାଞ୍ଚଟଙ୍କା ପାଞ୍ଚ ପାହିକ ଖର୍ଚ୍ଚଲାଣି । ସେ'ତ ମୁଣ୍ଡରେ ହାତଦେଇ ବସିପଡ଼ିଲା । ଭାଇମାନେ ପଚାରିବାରୁ କହିଲା ଯାହାତ କରିବାର କଲଣି, ଏଣିକି ଘୋଡ଼ାଙ୍କୁ ଏମିତି ଖାଇବାକୁ ଦେବ ଯେ ସବୁବେଳେ ଯେପରି ତାଙ୍କ ପେଟ ଉଚ୍ଚ ରହେ । ଭାଇଏ ହଉ କହିଲେ ।

ସେଦିନ ସଞ୍ଜବେଳକୁ ଭାଇଏ ବିଚାର କଲେ କ'ଣ କରିବା । ଯେତେ ଖାଇବାକୁ ଦେଲେ ବି ଏ ଘୋଡ଼ା ଗୁଡ଼ାକ ଗାଣ୍ଡିବାଟେ ହଗି ସବୁ ଲଣ୍ଡି କରି କାଢ଼ୁଛନ୍ତି । ପେଟ ଉଚା ରହିବ କେମିତି । ମଝିଆଁ କହିଲା ଆରେ ରୁହ । ଏ ଘୋଡ଼ା ଗୁଡ଼ାକ ଆମକୁ ଭାଇ ଭାବିଛନ୍ତି ନା କ'ଣ । ଗୋଟିଏ କରି ବାଉଁଶ କାଠ କରିବଟି । ଘୋଡ଼ାଙ୍କ ମଳ ଦରଜାରେ ମାରିଦେବା । ଦେଖିବା କେମିତି ହଗି

ଷଡ଼ଯନ୍ତ୍ର ସବୁ । ଏ କଥାଟା ସମସ୍ତଙ୍କ ମନକୁ ପାଇଲା । ସେମାନେ ଗୋଟିଏ ଲେଖାଁ ବାଉଁଶ କଳା ବାଟେଇ ଘୋଡ଼ାକୁ ଖାଇବାକୁ ଦେଇ ତାଙ୍କ ମଳଦ୍ୱାରରେ ସେ କଳାକୁ ବାଡ଼େଇ ଦେଲେ । କଳା ବାଡ଼େଇ ଦେବାରୁ ଘୋଡ଼ା ଗୁଡ଼ିକ ଛଟପଟ ହୋଇ ମରିଗଲେ । ବେପାରୀ ଖବର ପାଇ ଆସି ଦେଖିଲା ସବୁ ପାଞ୍ଚରେ ଶ୍ରେଷ୍ଠ ଦଆ-ସରିଛି । ସେ ଓଲାଙ୍କ ଉପରେ ମୁଣ୍ଡ ବାଡ଼େଇ ତାଙ୍କୁ ତଡ଼ି ଦେଲା । ହାଂସୁକୁଟିଆ ଲୋକ ଓଲାଙ୍କ ଚତୁରତା ଦେଖି ବହେ ହସିଲେ ।

"ସେ'ଠୁ ଓଲା ଗଲେ ଝରେ । ଯାଇ ପହଞ୍ଚିଲେ କଣ୍ଟା-ବାଞ୍ଜିରେ । କଣ୍ଟାବାଞ୍ଜିରେ କଷାଣ ଦାସ । ଓଲାଙ୍କୁ ଦେଖି ବୋଇଲା ଆସ । ଚାଷ ମୋ'ର ଆଠବାଟି । ଖାଇ ରହିବ ଖଟି ଖାଟି । ଶୁଣି ଓଲା ରାଜି ହେଲେ । ତା' ଘରୁ ଖାଇ କାମ କଲେ । ଦିନେ ଦାସେ ନେଇ ଓଲା, ବିଲ ବାଛିବା ପାଇଁ ଗଲା । ବିଲ ଚିହ୍ନେଇ ବୋଇଲା ବାନ୍ଧ, ଏଇଟା ଘାସ ଏଇଟା ଗଛ ।"

ଓଲାଏ ପଚାରିଲେ କାହାକୁ ରଖିବୁ କାହାକୁ ଉପାଡ଼ ଷଣ୍ଡା ମାରିବୁ । ଦାସେ କିଆରିରେ ପଶି କେତୋଟି ଧାନ ଗଛ ଧରି ଦେଖେଇ କହିଲେ ଏ ଗୁଡ଼ିକୁ ରଖିବ, ଆଉ ଯାହା ସବୁ ଉପାଡ଼ ଷଣ୍ଡା ମାରିଦେବ । ଏମିତି ଦେଖେଇ ସେ ଅନ୍ୟ ବିଲ ଦେଖିବାକୁ ଗଲା । ସେ'ଠୁ ଉପର ଓଳକୁ ଓଲା କେତେ ବାଛିଲେ ଦେଖିବାକୁ ଯାଇ ଦେଖେ ଯେଉଁ କେତୋଟି ଗଛ ସେ ଦେଖେଇ ଦେଇଥିଲା ସେଇତକ ରଖି ଆଉ ଯେତେ ଧାନ ବାଳୁଙ୍ଗା ଉପାଡ଼ି ପଡ଼ିଆ କରି ଥୋଇଛନ୍ତି । ଏହା ଦେଖି ତ ଦାସ ମୁଣ୍ଡରେ ଘାସ ହାତ ବାଡ଼େଇ ହେଲା । ଶେଷକୁ କହିଲା ତମ ଦେଇ ବିଲବଛା ହବନାଇଁ । ତମେ ଟୋକାଏ କରି ଘାସ କାଟି ନେଇଯାଅ । ସେଇଠ ଓଲାଏ ଘାସ କାଟିବାକୁ ଗଲେ ।

ସେଦିନ ଦାସ ଘରେ ଦାସ ମା ବୁଢ଼ୀ, ବୋହୂଙ୍କ ସଙ୍ଗରେ କଳିକଜିଆ କରି ଘରୁ ବାହାରି ଯାଇ ଗୁହାଳ ଘର କୋଣରେ ଚୁପ୍ ହୋଇ ବସିଥାଏ । ବୋହୂବି ରାଗରେ ଖୋଜି ନ ଥାନ୍ତି । ଏଇବେଳେ ଓଲୀଏ ଚେକାଏ କରି ଘାସ ମୁଣ୍ଡାଇ ଆସି ଦାସଙ୍କୁ ପଚାରିଲେ ଘାସ କେଉଁଠି ରଖିବୁ ? ଦାସ କହିଲେ ବଡ଼ ଗୁହାଳ କୋଣରେ ରଖିଦିଅ । ସେମାନେ ଗୁହାଳ କୋଣକୁ ଯାଇ ଦେଖିଲେ ବୁଢ଼ୀ ବସିଚି । ତାକୁ ପଚାରିଲେ ଆଲୋ ବୁଢ଼ୀ ! ତୁ ତ କୋଣ ଆବୋରି ବସିଲୁ ଘାସ ରଖିବୁ କେଉଁଠି ? ଏମିତି ଦି' ତିନି ଥର ପଚାରିଲେ । ବୁଢ଼ୀ ରାଗରେ କିମି ନଥାଏ ସେ କହିଲା, ଆରେ ଅଲୁଆଇସାଏ ! ମୋର ମୁଣ୍ଡରେ ରଖନା । ତହୁଁ ଏମାନେ ଆଟେଙ୍କା ଘାସ ବୁଢ଼ୀ ମୁଣ୍ଡରେ ଥୋଇ ଦେଇ ଗଲେ ।

ରାତି ବେଶୀ ହେବାରୁ ଦାସ ମା' ବୁଢ଼ୀକି ନଦେଖି ବୋହୂଙ୍କୁ ପଚାରିଲା ବୁଢ଼ୀ କାହିଁ ? ବୋହୂ କହିଲେ କେଜାଣି ଆମେ କହି ପାରିବୁ ନାହିଁ । ସିଏ ଆମ ସାଙ୍ଗରେ କଜିଆ କରି ପଳେଇଚି । ଦାସ ବୃଦ୍ଧିଆଡ଼େ ଖୋଜି ନ ପାଇ ଓଲିଙ୍କୁ ପଚାରିବାରୁ ଏମାନେ କହିଲେ ଗୁହାଳ ଘର କୋଣରେ ଘାସ ମୁଣ୍ଡେଇ ଯୋଉ ବୁଢ଼ୀ ବସିଚି ସେଇ ତୁମ ମା' ହେବକି ଦେଖିଲ । ଦାସ ଯାଇ ଘାସ ଉଠାଇ ଦେଖେ ତ ବୁଢ଼ୀ ଏକବାରେ ଖତମ୍ । ସେଇଠୁ ତାଠୁଁ ଘାସ କାଢିଆଣି ଭାବିଲା ଅବକା ଯୋଉ ପୋଲିସ ହୋଇଚନ୍ତି ଜାଣିଲେ ରକ୍ଷା ନାହିଁ । ପୁଣି ଭାବି ଓଲିଙ୍କୁ କହିଲା ଯାହାତ କଲଣି ମନ ବୁଝୁଚି; ଅବକା ବୁଢ଼ୀକି ଏଇ ରାତାରାତି ନେଇଯାଅ ବଣରେ ପୋତି ଦେଇ ଆସିବ । ଏକଥା ଶୁଣି ଆଠ ଓଲିଯାକ ଶାବଳ ଗଇଁତି ନେଇ ହେଁସରେ ବୁଢ଼ୀକୁ ଗୁଡ଼େଇ କାନ୍ଧେଇ ନେଇ ଦୌଡ଼ିଲେ । ଯାଉ ଯାଉ ବାଟରେ ମେଘ ତୋଫାନ ବର୍ଷା ହେଲା । ଏମାନେ ଅତିରିକ୍ତ ଦୌଡ଼ିଲେ । ପୁଣି ମଝିରେ ହେଁସରୁ ବୁଢ଼ୀଟା କୋଉଠି ଗଲା

ପଡ଼ୁଛୁ କାହାକୁ ମାଲୁମ ନାହିଁ । ଶେଷରେ ବର୍ଷା ଛାଡ଼ିବାରୁ ଗାତ ଖୋଳି ବୁଢ଼ୀକି ପୋତିବା ପାଇଁ ହେଁସ ଖୋଲିଲା ବେଳକୁ ଖାଲି ହେଁସ, ବୁଢ଼ୀ ନାହିଁ । ପୁଣି କୁହାକୁହି ହେଲେ ଆରେ ବୁଢ଼ୀଟା କୁଆଡ଼େ ପଳେଇଲା, ତାକୁ ପୋତିବାକୁ ଆଣିଲୁ ସେଥିପାଇଁ ସେ ପଳାଇଲାନା କ'ଣ ? ଆସ ଖୋଜ,ଗଲା କୁଆଡ଼େ । ଏମିତିକହି ଏପାଖ ସେପାଖ ଖୋଜି ନ ପାଇବାରୁ ଜଣେ କହିଲା ଆସ ମୁଁ ଡେଙ୍ଗା ଗଛରେ ଚଢ଼ି ଦେଖେଁ, ଯୋଉଠି ଯାଉଥିବ ଦେଖାଯିବ । ଯୋ କହି ଗଛରେ ଚଢ଼ି ସେ ଅନେଇଲା ବେଳକୁ ଅନେକ ଦୂରରେ ଗୋଟିଏ ବୁଢ଼ୀ କଅଁଳ ଖରରେ ତା ନାତୁଣୀ ଘରକୁ ଯାଉଚି । ସେଇଠୁ ସେ କହିଲା ଇଁ ଇ ଇ ଇ—ଓଲୁ ଭାଇଏ କହିଲେ କ'ଣ କରେ । ସେ କହିଲା ହେଇ, ବୁଢ଼ୀଟା ବାଡ଼ିଧରି ପଳଉଚି । ତାହା ଶୁଣି ଅନ୍ୟ ଭାଇ ଗୁଡ଼ିକ ଦୌଡ଼ ଦୌଡ଼ ବୁଢ଼ୀଟାକୁ ଧରି ଆଣିଲେ । ସେ ବୁଢ଼ୀ ଯେତେ କହିଲା ଆରେ, ମୁଁ ତୁମ ବୁଢ଼ୀ ନୁହଁରେ, ମୋତେ ଛାଡ଼ ଦିଅରେ । ଆରେ ହେ ବାଡ଼ପଡ଼ା ! ମୋତେ ଛାଡ଼ରେ । ହେଲେ ଛାଡ଼ୁଚି କିଏ, ଓଲୁଏ କହିଲେ ରହ ବୁଢ଼ୀ କୁଆଡ଼େ ପଳାଉଚୁ, ଲୋକ ଆମକୁ ଓଲୁ ବୋଲି ଡାକନ୍ତି ବୋଲି ତୁ ବି ଓଲୁ ମଣିଲୁ । ଏହାକହି ବୁଢ଼ୀକୁ ଆଣି କହିଲେ ଖୁବ୍ ଚାଲାକ କରି ପଳାଉଥିଲୁ ନାହିଁ ? ଆସ ରହ, ଦେଖିବା ଆଉ କୁଆଡ଼େ ପଳେଇବୁ । ଏହା କହି ଓଲୁଏ ବୁଢ଼ୀଟାର ବେକ ମୋଡ଼ି ଭାଙ୍ଗି ଗାତରେ ପୂରେଇ ଦେଲେ । ତା'ପରେ କଣ୍ଟା ଦେଇ ମାଟି ପକେଇ ପୋତି ଦେଇ ଆସିଲେ ।

ସେଠାରୁ କିଛି ଦୂର ଆସି ଦେଖିଲେ ବାଟରେ ଦାସ ମା ବୁଢ଼ୀଟା ହେଁସରୁ ଖସି ପଡ଼ିଛି । ସେଇଠୁ କହିଲେ ଆରେ ଏ ବୁଢ଼ୀଟାକୁ ଏତେ ଶକ୍ତକରି ପୋତି ଆସିଲୁ ଏଇ ପୁଣି ପଳେଇ ଆସି ଏଠି ପଡ଼ିଲାଣିନା । ଆସ ବଜାତ ବୁଢ଼ୀତ ଇଏ । ଏହାକହି

ପୁଣି ଗୋଟାଏ ସେଠାରେ ବେଶୀ ଗହ୍ୱରଆଗାଡ଼ ଖୋଳି ବୁଢ଼ୀଟାକୁ ପୋତି ଦେଇ ଆସି ଦାସ ଘରେ ପହଞ୍ଚିଲେ । ସେମାନେ ଆସିବାରୁ ଦାସ ପଚାରିଲେ ପୋତିଦେଇ ଆସିଚନ୍ତି ? ଓଲିଏ କହିଲେ ଆଜ୍ଞେ ସେ ବୁଢ଼ୀଟା ଇମିତି ବଜାଡ଼ିନା । ଆମେ ତାକୁ ଚିଶି ଗାତ ଖୋଳୁଚୁ ବୁଢ଼ୀ ଧେଁସରୁ ବାହାରି ଚଲି । ଗୋଡ଼େଇ ଗୋଡ଼େଇ ପାଇଲୁ । ଧରିଆଣି ବେକମାଡ଼ି ଭାଙ୍ଗି ପୋତିଦେଇ ଆଇଲୁ । ଆସି ଅଧ-ବାଟରେ ହେଇଚୁ, ପୁଣି ଦେଖିଲୁ ବଦମାସ ବୁଢ଼ୀଟା ଆସି ବାଟରେ ପଡ଼ିଚି । ସେଇଠୁ ତାକୁ ଏମିତି ଗହ୍ୱର ଗାତ କରି ପୋତିଦେଇ ଆସିଚୁ ଯେ, ଆଉ ବୁଢ଼ୀ କ'ଣ ତା ବୋପା ବି ବାହାରି ପାରିବ ନାହିଁ ।

ଓଲିଙ୍କ କଥା ଶୁଣି ଦାସ ମୁଣ୍ଡରେ ହାତଦେଇ ବସିଲା । ତା'ପରେ ଭାବିଲା ଏଗୁଡ଼ାକ କୋଉଠୁ କାହା ବୁଢ଼ୀକୁ ଧରି ଆଣି ଗାଅନ୍ତା ମଣିଷଟାକୁ ପୋତି ଦେଇଚନ୍ତି ବୋଧେ । ମୋ ବୁଢ଼ୀଟିକୁ ତ ମାରିଲେ । ପୁଣି କାହା ବୁଢ଼ୀଟାକୁ ମାରିଦେଇ ଆସିଛନ୍ତି । ୟାଙ୍କୁ ଆଉ ରଖିବ ନାହିଁ । ଏହାଭାବି ଆଠଜଣଙ୍କୁ ଅଠୋଟି ଟଙ୍କା, ଆଠସେର ଚାଉଳ ଦେଇ କହିଲେ, ଓଲିଏ ! ତୁମ ବାଟ ତୁମେ ଦେଖ । ମୁଁ ତୁମକୁ ଘରେ ରଖିବ ନାହିଁ ।

ସେଇଠୁ ଓଲିମାନେ ଟଙ୍କା ଚାଉଳ ଧରି ଆସିଲେ । ଆସୁ ଆସୁ ଭୋକ ଲାଗିବାରୁ ଗୋଟିଏ ପୋଖରୀ ପାଖରେ ବରଗଛଟିଏ ଦେଖି ତା'ର ମୂଳରେ ବେଢ଼େଇ ବସେଇଲେ । ଭାତ ତରକାରୀ ହେଲାସିନା ଖାଇବେ କୋଉଥିରେ, ପତର କାହିଁ ? ତାଙ୍କ ଭିତରୁ କିଏ କହିଲା ତୁ ପତର ଆଣିବୁ ଯା, କିଏ କହିଲା ତୁ ଆଣିବୁ ଯା, ଏମିତି କରି ତାଙ୍କ ଭିତରେ ଠେଲା ପେଲା ହେଲେ । ବଡ଼ କହିଲା, ଆଚ୍ଛା ଚୁପ୍‌କରି ସମସ୍ତେ ବସ । ଯିଏ ଆଗେ କଥା କହିବ ସେଇ ପତର

ଆଣିବାକୁ ଯିବ । ଏ କଥା ସମସ୍ତଙ୍କ ମନକୁ ପାଇବାରୁ ଆଠ ଜଣଯାକ ଚୁପ ହୋଇ ବସି ରହିଲେ । ଏଇବେଳେ ଜଣେ ଟାଉଟର ସେଇବାଟେ ଯାଉଥିଲା । ସେ ଦେଖିଲା ଗୋଷେଇ କରି ଟୋକା ଗୁଡ଼ାକ ନ ଖାଇ ଚୁପ୍ ହୋଇ ବସିଚନ୍ତି କାହିଁକି, ଏମିତି ଏମାନେ ବକ ଧ୍ୟାନ ପରି କରୁଛନ୍ତି ସେ ଲକ୍ଷ୍ୟକଲା । ଅନେକ ବେଳଯାଏ ଦେଖି ଯେତେ ପଚାରିଲା କେହି କିଛି କହିଲେ ନାହିଁ । ସେଇଠୁ ଟାଉଟରଟା ଭାତ ତରକାରିରୁ ଆଣି ପେଟେ ଖାଇଲା । ତଥାପି ଏ ଗୁଡ଼ାକ ଦେଖି ବି କିଛି କହୁ ନାହାନ୍ତି ଜାଣି, ଚୁଲିରୁ ନିଆଁ ଖୁଣ୍ଟା ଗୋଟିଏ ଆଣି ଜଣ ଜଣକୁ ଚେଙ୍କାଏ କରି ଲଗାଇ ଦେଲା । ହେଲେ ବି ସାତ ଜଣ କିଛି ନ କହି ସହିଗଲେ ସାନ ବାବୁରେ ଡବଲ ଚେଙ୍କା ବସିବାରୁ ସେ କହିଲା ଇଲେ ବୋଉ ! କରେ ! ସମସ୍ତଙ୍କୁ ଚେଙ୍କ ମୋତେ ଡବଲ ଚେଙ୍କା କାହିଁକି ? ମୁଁ କ ଚୋ ଶତ୍ରୁ, ସେଇଠୁ ଆର ସାତଜଣ କହିଲେ, ତୁହି ଯା ପଚର ଆଣିବୁ । ଆଗେ ତୁ କଥା କହିଚୁ । ଏହାକହି ଯେମିତି ଆଠଜଣଯାକ ଉଠିଲେ, ଟାଉଟର ଛୁ । ସେମାନେ ପଛ ଅଣାଇ ଦେଖିଲେ ଆଉ ଭାତ ଡଅଣ ନାହିଁ । ସେଇଠୁ ଭୋକ ଉପାସରେ ଆଗେଇଲେ ।

କିଛିବାଟ ଯିବାପରେ ଦେଖିଲେ ଗୋଟିଏ ଗଛ ମୂଳରେ ଜଣେ ସାଧୁ ଧ୍ୟାନରେ ବସିଛନ୍ତି । ଏମାନେ ଠରାଠରି ହୋଇ ପଚାରିଲେ ଆରେ ଏ ଲୋକଟା କାହିଁକି ଏମିତି ବସିଚ । ପିଲା କହିଲା ଆରେ ତୁ କହୁନୁ, ସେଟା ସେମିତି ବସିଚ କାହିଁକି । ଏମିତି ପଚରା ପଚରି ହୋଇ କେହି କିଛି ବୁଝି ପାରିଲେ ନାହିଁ । ଏହିବେଳେ ସେଇ ବାଟ ଦେଇ ପଞ୍ଚାଏ ହାଟୁଆ ଯାଉଥିଲେ । ତାଙ୍କୁ ଦେଖି ଏମାନେ ଯାଇ ପଚାରିଲେ ଭାଇ ! ଏଇ ଲୋକଟା ଏମିତି ବସିଚ କାହିଁକି ? ଏ'ଟା କିଏ ? ହାଟୁଆ କହିଲେ ସେ ଜଣେ ଋଷି, ବସିଚନ୍ତି ଧ୍ୟାନରେ, ଏକାଗ୍ରରେ ।

ଏକଥା ଶୁଣି ଆଠ ଓଲଙ୍କର ରାଗ ବଢ଼ିଲା । ସେମାନେ କହିଲେ ଏଇ ରୁଷିବାରୁ ଆମର ଏ ଦଶା । ଦାସ ମା ବୁଢ଼ୀ ରୁଷି ବସି ଘାସ ମୁଣ୍ଡେଇବାରୁ ଆମେ ତଡ଼ା ପାଇଲୁ ସିନା । ବୋହିଲେ ଯୋଉ ଓଲୁଅ ଆମ୍ଭି ଳ ଦଉଥିଲା ସେ । ତାଙ୍କ ଭିତରୁ ଜଣେ କହିଲା, ଏଇ ଋଷି ଯୋଗୁ ଆମେ ଆଜ ବାଟ ବୁଳ । ଆଉ ଜଣେ କହିଲ, ଏହାକୁ ଛାଡ଼ିବା ନାହିଁ । ଆଉ ଜଣେ କହିଲେ ଆବେ । ରହିଁଚ କ'ଣ ? ବାଡ଼ା ଦେ' ଟାକୁ । ସେ ଭାଇଟା ଯାଇ ଯେମିତି ଋଷିଙ୍କ ପିଠିରେ ବାଧାଏ କଷି ଦେଇଚ, ଋଷି ଆଖି ଖୋଲି ଦେଖିଲେ । ତାଙ୍କ ଦୃଷ୍ଟି ପଡ଼ିବା ସଙ୍ଗେ ସଙ୍ଗେ ଏ ଆଠ ଓଲି ଆଠଟି ପଥର ପିଣ୍ଡୁଳା ପାଲଟି ଯିଏ ଯେମିତି ଥିଲା, ସେମିତି ବସି ରହିଲେ । ବୁଝିଲୁଟରେ ଅବୋଲକରା ଆଠ ଓଲଙ୍କ ପଥର ହେବା କଥା । ଏହା କହି ଗୋସେଇଁ ଖାଇବାକୁ ଗଲେ । ଏ ଗପଟି ମଦନ ସ୍ୱାଇଁଠାରୁ ଶୁଣିଥିଲି ।



## ରଥଙ୍କ ଘଣ୍ଟସୂତ୍ର କୀର୍ତ୍ତି

ତହିଁ ଆରଦିନ ଗୋସେଇଁ ଅବୋଲକରା ଦିହେଁ ଦକ୍ଷିଣକୁ ତୀର୍ଥ ଯାତ୍ରା କରିଗଲେ । କାବେରୀ ନଦୀ କୂଳରେ ସୁନ୍ଦର ଧର୍ମ-ଶାଳାଟିଏ ଦେଖି ଗୋସେଇଁ କହିଲେ ଅବୋଲକରା ! ଆଜ ଏଇଠି ରହିଯିବାରେ । ତୁ ଆଠଅଣା ପଇସା ନେଇ ଯା, ହାଟରୁ କିଛି ପରିବା ଡାଲି କିଣି ଆଣିବୁ । ଆଉ ସବୁ ଅଛି । ଗଣ୍ଡାଏ ରୋଷେଇ କରି ରାତିଟା ଚଳିଯିବା । ଏ କଥାରେ ଗଣ୍ଡି ଳ ରଖି ଅବୋଲକରା ଆଠଅଣା ପଇସା ନେଇ ସଉଦା କିଣିବାକୁ ଗଲା । ଗୋସେଇଁ ସନ୍ଧ୍ୟା କରି ଉଠୁ ଉଠୁ ଚନ୍ତୁ । ଅବୋଲକରା ଡାଲି ପରିବା ଥୋଇଦେଇ ତା ଲୁଗାପଟାତକ ବନ୍ଧାବନ୍ଧ କରିବାରୁ ଗୋସେଇଁ ପଚାରିଲେ କରେ ! ଲୁଗାପଟା ବାନ୍ଧିଲୁଣି କାହିଁକି ?

ଅବୋଲକରା କହିଲା, ଆଜ ମୁଁ ପଳେଇବ ଗୋସେଇଁ । ବଜାରକୁ ଯାଇ ଦେଖିଲା ଗୋଟିଏ ପଥର ଗୁମ୍ଫାରେ ଲେଖାଅଛି— 'ଏହା ରଥଙ୍କର ଷଟପୂତ୍ର କାର୍ତ୍ତି ।' କାରଣଟା ଯେତେ ଲୋକଙ୍କୁ ପଚାରିଲେ ସମସ୍ତେ କହିଲେ କହି ପାରିବୁ ନାହିଁ; ସେଇଟା ବୁଝିବାକୁ ଥିବ । ତମେ ଯଦି କହିବ ତ ରହିବ; ନୋହିଲେ ଅନ୍ୟ କାହାକୁ ପଚାରି ବୁଝିବାକୁ ଥିବ ।

ଗୋସେଇଁ କହିଲେ ବେହିପୋ ଭଣ୍ଡାରଟା ମୋତେ ତ ଆଚ୍ଛା ଧମକାଇଲୁ ହେ । ହଉ କ'ଣ କରିବା; ଗୋଡ଼ ହାତ ଟିପିଟାପି ଦେଇ ବୋକରୁ ବୋହୁଚି ଯେତେବେଳେ କଥାଟା କହିଦେବା । ଏହାଶୁଣି କହିଲେ ହଉରେ—'ପକା କମ୍ବଳ ରଅଖ ଛତା, ଶୁଣ ଅବୋଲକରା ସେ କଥା । ଅବୋଲକରା ଖୁସି ହୋଇ ବସିବାରୁ ଗୋସେଇଁ କହିଲେ—

ଏ ଦେଶର ନାମ ମହାବଳେଶ୍ୱର । ଏଠାରେ ଆଗେ ଜଣେ ବ୍ରାହ୍ମଣ ରହୁଥିଲେ, ତାଙ୍କ ନାଁ ଠାକୁର ରଥ । ତାଙ୍କୁ କେହି ଠକୁରଥ କେହି ରଥେ ଆପଣେ ବୋଲି ଡାକନ୍ତି । ନାଁଟି ସାଙ୍ଗରେ ରଥଙ୍କ କାର୍ଯ୍ୟରେ ମେଳଥାଏ ଷୋଳପଣ । ତାଙ୍କର ଜମି ବାଡ଼ ବୋଇଲେ ଛ' ଗୁଣ୍ଠ—ଖାଇବାକୁ ଦୁଇ ପ୍ରାଣୀ । ପୁଅ ଝିଅ କଳେ କଳେ ହେଲେ ବ୍ରାହ୍ମଣୀଙ୍କର ମାଛ ନୋହିଲେ ଭୋଜନ ହୁଏ ନାହିଁ । ରଥଙ୍କର ତ ବିନା ଗଞ୍ଜାରେ ସଞ୍ଜ ଚଳେନା । ଏପରି ଖର୍ଚ୍ଚକୁ ରଥେ ବେଶ୍ ଚଳେଇ ନଅନ୍ତି । ବେଶରେ ନାମାବଳୀ, ହାତରେ ଚିମୁଟା, ପାଦରେ କଠଉ, ପହରଣ କପାବସ୍ତ୍ର । ଜ୍ୟୋତିଷରୁ ଦଶ, ବ୍ୟାକରଣରୁ ପାଞ୍ଚ, ଚାଣକ୍ୟ ଶ୍ଳୋକ କେତୋଟି ମୁଖସ୍ଥ କରିଥାନ୍ତି । ସେଇଥିରେ ଟାଉଟର କରି ଦିନ ଚଳିଯାଏ । ଏ ବେଶ ତାଙ୍କର ଆଗରୁ ନଥିଲା । ଥରେ ଗୋଟିଏ ବିଧବା ବ୍ରାହ୍ମଣୀ ଦାଣ୍ଡରେ ପତର ଜାଳି ପୋଡ଼ପିଠା କରୁଥିଲା । ରଥ ଦୂରରୁ ଲକ୍ଷ୍ୟ କରୁଥିଲେ । ବ୍ରାହ୍ମଣୀ ଯେମିତି

ପିଠାଟି ଓଲଟେଇ ଦେଇ ସେଠାରୁ ଦୂରେଇ ଗଲା, ରଥ ଗୋଟିଏ ଖଣ୍ଡିଆ ପିକା ନେଇ ସେଇ ନିଆଁରେ ସୁଲୁକେଇଲେ । ତାଙ୍କୁ ଏପରି କରିବାର ଦେଖି ବ୍ରାହ୍ମଣୀ ହାଁ, ହାଁ କହି ଆସିଲା ବେଳକୁ ରଥ ପିଠାଟିକୁ ଟିପୁଚନ୍ତି । ବ୍ରାହ୍ମଣୀ ତ ଶୁଦ୍ଧଚାରିଣୀ ବିଧବା । ରଥ ଏପରି କରୁଥିବାର ଦେଖି ଚଗୃରିଲେ ହଇରେ ତୁ ମୋ ପିଠାଟିକୁ ଛୁଇଁ ଦେଲୁ । ଆରେ ତୁ କେଉଁ ଜାତିର ପୁଅରେ ? ରଥଙ୍କର ତ ସେତେବେଳେ ଭୋକରେ ପେଟ ପୋଡ଼ି ଯାଉଚି । କହିଲେ ମୁଁ ବଢ଼େଇ ଘର ପୁଅ । ଏହା ଶୁଣି ବିଧବାର ଦେହ ବନ୍ଧ ହେଲା । ସେ କହିଲା ତୁ ନିର୍ବଂଶିଆ ବଢ଼େଇଟା ମୋ ପିଠାକୁ ଛୁଇଁ ଦେଲୁ । ଆଚ୍ଛା, ମୁଁ ଆଜି ଉପାସ ରହିବି, ତୁ ସେ ଛୁଆଁ ପିଠାଟି ନେଇ ଯା । ରଥେ ପିଠାଟି ଆଣି ନିଶ୍ଚିନ୍ତରେ ଖାଇଲେ । ଘରେ ଆସି ବ୍ରାହ୍ମଣୀ ପାଖରେ କହିବାରୁ ସେ ଗୁଞ୍ଜୁଣୀ ଧରି ଗୋଡ଼େଇଲା । ସେଇ ଦିନଠୁ ରଥେ ନକଲି ସାଧୁବେଶ ଧରିଚନ୍ତି ଓ ବାର ଜାଗାରେ ବୁଲି, ବାର ଲୋକଙ୍କୁ ଠକେଇ ଜୀବିକା ନିର୍ବାହ କରୁଚନ୍ତି ।

ଦିନେ ରଥେ ଝୁଲିମାଳା, ରୁଦ୍ରାକ୍ଷ, ଚିମୁଟା ଧରି ଯାଇ କି' କୋଶ ବାଦେ ବେଣୀପୁର ଗାଁରେ ପହଞ୍ଚିଲେ । ସେଠୁ ଜଗୁ ବିଶ୍ୱାଳ ବୋଲି ଗୋଟିଏ ଖଣ୍ଡାୟତ ଘର । ଠିକ ରଥେ ଯାଇ ତାହାର ପିଣ୍ଡାରେ ବସି—

ନବ ନୀରଦ ନିନ୍ଦିତ କାନ୍ତି ଧରଂ
ନବ କିଶୋର ନାଗର ରୂପ ବରଂ ।
ନୀଳ ଅମ୍ବୁଜ ବଙ୍କିମ ନେତ୍ର ଯୁଗଂ
ଭଜ କୃଷ୍ଣ ଗୋବିନ୍ଦ ଶ୍ରୀ ନନ୍ଦ ସୁତଂ ।

ଶ୍ଳୋକ ପଢ଼ିବାକୁ ଲାଗିଲେ । ଜଗୁ ବିଶ୍ୱାଳଙ୍କ ସ୍ତ୍ରୀ ଆବାଜ ପାଇ ସ୍ୱାମୀଙ୍କୁ କହିଲେ, କିଏ ଜଣେ ସାଧୁ ଆସି ଶ୍ଳୋକ ବୋଲୁଛନ୍ତି,

ଦେଖିଲେ । ଜଗୁ ଆସି ଦେଖିଲେ ତପୋବନରୁ ଆସିବା ପରି ସାଧୁ ଜଣେ । ତାଙ୍କୁ ଦେଖି ସେ ଲମ୍ବ ହୋଇ ଗୋଡ଼ତଳେ ପଡ଼ିଗଲେ । ତାଙ୍କର ଚୌଦବର୍ଷୀ ସୁନ୍ଦରୀ ଝିଅକୁ ନେଇଆସି ଘରଣୀ ମଧ୍ୟ ଦଣ୍ଡବତ ହେଲେ । ସେ ଦିନ ରାତିରେ ଠକ ସନ୍ନ୍ୟାସୀଙ୍କର ରହଣି ବ୍ୟବସ୍ଥା ସେଇଠି ହେଲା ।

ସଞ୍ଜପରେ ଗଞ୍ଜା ପର୍ବ ସାରି ରଥେ ସେଷେଇ ପର୍ବ ଆରମ୍ଭ କଲେ । ସେଇବେଳେ ଜଗୁ ସ୍ୱାମୀ ସ୍ତ୍ରୀ ଓ ଏକମାତ୍ର ଝିଅକୁ ନେଇଆସି ଠାକୁରଥଙ୍କଠୁଁ ଜ୍ଞାନଗର୍ଭ ଭାଷଣ ଶୁଣିଲେ । ରଥେ ଦୁର୍ଯ୍ୟୋଧନର ଉରୁଭଙ୍ଗଠାରୁ, ହୀରାକୁଦ ବନ୍ଧଯାଏ ଯୋଡ଼ି ଗପ କହୁଥାନ୍ତି । ତା ଭିତରୁ ଗୋଟିଏ କରି ଶ୍ଲୋକ ଲଗାଇଥାନ୍ତି । ଆମେ ଜନ୍ମେ ଜନ୍ମେ ଦେଶ ଦଶର ବ୍ରତକରି ଆସିଛୁ । ଲୋକନାଥ ଦେଉଳ କୋଣାର୍କ ମନ୍ଦିର ଆମରି ମତରେ ହୋଇଛି । ମୁଁ ଜାତିସ୍ମର, ଆଗେ ଥିଲି ମୁଁ ଗୋବିନ୍ଦ ପାଟଯୋଷୀ, ବଡ଼ ଦେଉଳର ନକ୍ସାଠାରୁ ଗୁମ୍ଭ, ମାଣ, ବାଟି, ଆମରି ସୃଷ୍ଟି । ପୁଣି ଶିବେଇ ସାନ୍ତରା ହୋଇ କୋଣାର୍କ କଲୁ । ଶେଷକୁ ମହାତାବ ହୋଇ ପାରାଦ୍ୱୀପ ବନ୍ଦର କରିବୁ । ଏମିତି ଆକାଶ କସ୍ତୁଁକୁ ଚିଲିକା ଇଲିଶି ଯୋଡ଼ି କହିବାରୁ ସେ ବିଶ୍ୱାଳ ବଂଶର ବିଶ୍ୱାସୀ ହେଲେ । ସେଠାରେ ତିନିଦିନ ରହଣି ହେଲା ରଥଙ୍କର ।

ଦିନେ ଜଗୁ ସ୍ତ୍ରୀ ଓ ଜଗୁ ବିଚାର କରି କହିଲେ ଆପଣତ ବାଣପୁରଠୁଁ ବାରାଣସୀ ଯାଏ ବୁଲୁଛନ୍ତି । ଯଦି କୋଉଁଠି ସୁବିଧା ଘରବର ଦେଖନ୍ତି ତ ଆମର ଗୋଟିଏ ମାତ୍ର ଝିଅ ପାଇଁ ଦେଖିବେଟି । ମୁଁ ତ ଆମର ଏକା ଲୋକ, ଗୃହ ଘର, ଝିଅ ଭାର୍ଯ୍ୟା ଛାଡ଼ି ଟିକିଏ କୁଆଡ଼େ ଯାଇ ପାରୁନି । ଯଦି ଆପଣ ସୁବିଧାରେ ଯୋଗାଡ଼ କରିଦେବେ, ମୁଁ ଆପଣଙ୍କୁ ପଚାଶଟି ଟଙ୍କା ଦେବି । ଏକଥା ଶୁଣି ଠାକୁରଥେ କହିଲେ କେତେ ବଡ଼ ବଡ଼ କାର୍ଯ୍ୟ କରିଦେଲି, ଇଏକା

କୋଉ ଗୁଆରେ । ତମେ ନିଶ୍ଚିନ୍ତ ହୋଇ ଘରେ ଛେପ ପକାଇ ବସି ରୁହ । ମୁଁ ଏଇ ଭିତରେ ଠିକ୍ କରି ଦଉଚି । ହେଲେ ଦେବା ନବା କଥାଟା କହିଥା । ବଣ୍ଟାଳେ କହିଲେ ମୁଁ ଗୃହୀଲୋକ, ଚଷା ବସା ଖାଇ ଯାହା ବଳଚି ସବୁ ଝିଅକୁ ଦେବି । ତେବେ ପାଞ୍ଚ ହଜାର ଭିତରେ ସବୁତକ ହେବ । ହଁ ବୟସ ଯେପରି ବେଶୀ ନ ହୁଏ । ରଥେ ଟିକିଏ ଭାବି କହିଲେ ଖୁବ୍ କମ୍ ବୟସର ହେଲେ ଅପାକଳ ଟୋକାଟା ବୋକା ହେବ । ଧନ ସମ୍ପଦ ଉଡ଼େଇ ଦେବ; ତେଣୁ କେବେହେଲେ କମ୍ ବୟସୀଙ୍କୁ ଗୁରୁତ୍ୱ ଦବନାହିଁ । ବଣ୍ଟାଳେ ! ଲଙ୍କା ଯେତେ ପାକଳ ହେବ ରାଗ ବଢ଼ିବ ସେତେ । ବଣ୍ଟାଳ ଭାବିଲେ କଥାଟା ସତ, ସେ'ତ ନିଜେ ଟୋକାବେଳେ କେତେ ଧନ ଉଡ଼େଇଚନ୍ତି । ସେଥିପାଇଁ କହିଲେ ଅନ୍ତତଃ ଆମ ବୟସରୁ ଯେପରି ବେଶି ନ ହୁଏ । ବାବାଜି ରଥେ କହିଲେ,ପାଗଳ ହେଲେ ବଣ୍ଟାଳ ! ତମ ଝିଅ ଆମ ଝିଅ କ'ଣ ସମାନ ନୁହନ୍ତି । ଆଚ୍ଛା ମୁଁ ଯିବି, ବାଟଖର୍ଚ୍ଚ— । ଏତିକି କହିବାରୁ ବଣ୍ଟାଳ ଦଶଟି ଟଙ୍କା ଦେଇ କହିଲେ ଆଜ୍ଞା ଠିକ୍ କରି ଦିଅନ୍ତୁ ମୁଁ ଆଉ ପଚାଶ ଦେବି । ଠକୁରଥ ସେଠାରୁ ଦଶଟଙ୍କା ନେଇ ଆସିଲେ ।

"ସେଠୁ ରଥେ ଗଲେ ଘରେ, ଯାଇ ପହଞ୍ଚିଲେ ରାମ ନଗରେ । ରାମନଗର ମଦନ ସ୍ୱାଇଁ । ଟଙ୍କା ଧାନରେ କଳନା ନାହିଁ । ଭାର୍ଯ୍ୟା ତିନିଯୋଡ଼ା, ଘରେ ପାହିଲେ କଳି ଝଗଡ଼ା । ତେର ପୁଅ କାଢ଼ନ୍ତି ବାଡ଼ । ଷୋଳନାହି ଟାଣନ୍ତି ଦାଡ଼ି । ବୁଢ଼ା ବୟସ ବାଆସ୍ତରି । ପୁଣି ଲୋଡ଼ା ନୂଆ ସ୍ତିରି । ସେ ପାଇଁ ତା'ର ଦୋଘର ଘର, ଚାକର ନେଇ ରହେ ସେଠାରେ । ସେ'ଠି ଯାଇ ମିଳିଲେ ରଥେ, ଜଗୁ ବଣ୍ଟାଳଙ୍କ ପ୍ରସ୍ତାବ ମତେ ।"

ଠକୁରଥତ ଆଗରୁ ସ୍ୱାଇଁଙ୍କ ବାହା ହବା ଇଚ୍ଛା ଜାଣିଥିଲେ । ସେ'ଠି ଯାଇ କହିଲେ: ଆଜ୍ଞା ! ଆପଣଙ୍କ ପାଇଁ ଯୋଉ ପାର୍ଟୀ

ଯୋଗାଡ଼ କରିଚି ସାରା ଓଡ଼ିଶାରେ ନାହିଁ ନଥିବ । ଏକବାରେ ଚୌଦବର୍ଷ ବାଳା । ରଥଙ୍କ କଥା ଶୁଣି ସ୍ୱାଇଁ ବଡ଼ ଖୁସୀ ହେଲେ, ତା' ଛଡ଼ା ବୁଢ଼ା କାଳକୁ ତ ବାଳା ବେଶି ବଳ ଦିଅନ୍ତି । ତେଣୁ ସେ ଖୁସୀ ହୋଇ କହିଲେ କେତେ କ'ଣ ଦବାକୁ ହେବ କହ ରଥେ । ରଥ କହିଲେ, କନ୍ୟା ବାପର ବେଶୀ ଦାବୀ ନୁହେଁ ଆଜ୍ଞା ! ବନଶ ପଚଶ ନବ । ତା ଶଳା ନବ ଦେଡ଼ଶ । ନୋହିଲେ ସେ'ଟା ଯୋଉ ଟାଉଟର, ଭଉଣୀକୁ ଶିଖେଇ ଭାଙ୍ଗିଦବ, ମୋ' ପରିଶ୍ରମ ପାଇଁ ଯାହା ଦେବେ ଆଜ୍ଞା ! ସେ'ଟା ଆପଣଙ୍କ ଖୁସୀ । ତେବେ ସେ ଟାଉଟର ଟଙ୍କାଟା ଆଗେ ପାଇଲେ ତା ମୁହଁ ବାନ୍ଧିବାକୁ ହବ । ନ ହେଲେ ସିଏ ଯୋଉ ଟାଉଟର, ଠାକୁର ଖଟୋଳି ସବୁ ଖାଏ, ସେଇଠୁ ସାଇଁ ଘରୁ ଆଣି ଦେଡ଼ଶହ ଟଙ୍କା ଟାଉଟର ପାଇଁ, ପୁଣି ଦଶଟଙ୍କା ରଥଙ୍କ ଖର୍ଚ୍ଚ ପାଇଁ ଦବାରୁ ରଥ ଚାଲିଲେ । ସାଇଁ କହୁଥାନ୍ତି, ପୁଅ ନାତି ତ ଘରୁ ଛଡ଼ିଚନ୍ତି । ଜମି ଜମା ସବୁ ଆଗରୁ ତାଙ୍କୁ ଦେଇ ଦେଇଚି । ବାକି ଦି' ମାଣେ, ଟଙ୍କାଟିକ ସବୁ ସିବ ବାହା ଘରେ । ପରେ ଚଳିବା କେମିତି । ସେଇ କଥା ଭାବୁଚି, ରଥ ସେତିକିବେଳକୁ ପଥରେ ।

ସେଠାରୁ ଟଙ୍କା ଧରି ଆସି ଠାକୁରଥେ ଜଗୁ ବିଶ୍ୱାଳ ଘରେ ପହଞ୍ଚିବାରୁ ବିଶ୍ୱାଳ ସ୍ୱାମୀ ସ୍ତ୍ରୀ ଦିହେଁ ବଡ଼ ଆଗ୍ରହରେ ଦୌଡ଼ି ଆସିଲେ । ରଥ ଗୋଡ଼ ଧୋଇ ଆସନରେ ବସି ଆଖି ମୁଦି ଟିକିଏ କୃଷ୍ଣ କୃଷ୍ଣ ଭଜ ହେବାରୁ ବିଶ୍ୱାଳ ପଚାରିଲେ ବଡ଼ ତରନ୍ତ ଲେଉଟିଲେ ଆଜ୍ଞା ! ଖବର କିଛି ପାଇଚନ୍ତି ? ରଥ କହିଲେ କନ୍ୟାବାପ୍ପ ବୋଲି ଯୋଉକଥା, ତା ଛଡ଼ା ତମେ ଦି' ପ୍ରାଣୀ ଏମିତି ବ୍ୟସ୍ତ ହେଲ, ତୁରନ୍ତ ବ୍ୟବସ୍ଥା ନକରି ରହିବ କାହିଁ ? ଯା ହଉ ପାକ ତ ଠିକ୍ ହେଲା । ଅବିକା ତମେ ଝିଅ ଦେଲେ ହେଲ । ଜଗୁ ବିଶ୍ୱାଳ କହିଲେ ଦବା ପାଇଁ ତ ଆପଣଙ୍କୁ ଧରିଚି,

ନୟ, ବାହା—ବିବାହ, ମାମଲ୍—ଝମିଲ୍—ଏ ଗୁଡ଼ାକ ପରା ସେହି ସେଥିରେ: ଆଚ୍ଛା ତମେ ନିୟମ ସୁକୃତ କରିବଟି ।

ଜଗୁ ବିଶ୍ୱାଳ କହିଲେ କପରି ପାଠ ଠିକ୍ କଲେ । ଆପଣ ଆଗ କହନ୍ତୁ । ରଥ କହିଲେ ସେମିତି ହବନାହିଁ । ମୁଁ ତୁଳସୀ ମାଳ ଧରି ନିୟମ କରି ପାଠ କଥା କହିବି । ତୁମେ ସେଇ ମାଳ ଧରି ଛୁଇଁ ଦେବ । କଥା କହିବ । ଏଥିରେ ରାଜି ଥିଲେ ତୁଳସୀ ମାଳ ନିଅ, ଧରି କୁହ । ବିଶ୍ୱାଳ ଦେଖିଲେ ସାଧୁବାବା ଯେତେବେଳେ ଏତେ ଦୃଢ଼କରି କହୁଚନ୍ତି, ଏଥିରେ ଅବିଶ୍ୱାସ କ'ଣ ଅଛି । ସେ କହିଲେ ହଉ କହନ୍ତୁ ।

ସେଇଠୁ ରଥେ ଝୁଲିରୁ ମାଳ କାଢ଼ି ଧରି କହିଲେ ମୁଁ ଯାହା କହୁଛି ଧର୍ମକୁ ସାକ୍ଷୀ ରଖି କହୁଛି । ତାଙ୍କ ନାଁ ମଦନ ମୋହନ, ବୟସ ଏଇ ଧର ଆମ ତମ ବୟସ ହୋଇପାରେ, ରୂପଟିଙ୍କ ଅବିକଳ କୃଷ୍ଣଙ୍କ ପରି ମଦନ ମୋହନ । ଯାନ ବାହନ ଅଚଳନ୍ତି । ଗୋରୁ ଗାଈ ଘରେ ଅଧେ, ବାହାରେ ଅଧେ । ଛିଅ ଯାଉ, ଯେତେ ଖାଇ ସେତେ ଖାଉ, ଘର ବୋଇଲେ ଚନ୍ଦ୍ର ସୂର୍ଯ୍ୟଙ୍କୁ ଦେଖିବ ନାହିଁ । ବିଦ୍ୟାରେ କୁମାର ସମ୍ଭବର ସବୁ ତଥ୍ୟ ଜାଣନ୍ତି । ଆଉ କ'ଣ ଗୁହଁ ? ଜଗୁ ଏବଂ ତା'ର ସ୍ତ୍ରୀ ଭାରି ଖୁସି ହେଲେ । ପ୍ରସ୍ତାବ ଶୁଣି ଜଗୁ ସ୍ତ୍ରୀ କହିଲେ କହୋ ! ତମେ ସୁକୃତଟା କରି ଦଉନା । ରଥେ କହୁଥାନ୍ତି କର, କର, ଶୁଭସ୍ୟ ଶୀଘ୍ରଂ । ଜଗୁ ତୁଳସୀ ମାଳ ଧରି ଛିଅ ଦେବାର ମଟ୍ୟପାଠ କଲା । ତହିଁ ଉତ୍ତାରୁ ରଥେ ଜଳଖିଆ ସାରି ପାଞ୍ଜି ଦେଖିଲେ, କହିଲେ ଫଗୁଣ ତେରଦିନ ଭଲ ଲଗ୍ନ ଅଛି । ସେଇଦିନ ମୁଁ ବର ଘେନି ପହଞ୍ଚିବି । ତମେ ସବୁ ଠିକ୍ କରି ଛିଅ ମଙ୍ଗୁଳା ସାରିଥିବ । ଏ କଥାରେ ଜଗୁ ରାଜି ହେବାରୁ ରଥେ କହିଲେ ଆମର ଦାବୀ ପାଉଣା ଗଣ୍ଡାକ ଦବତ ବାପା ?

ଜଗୁ ଘରୁ ପୁଣି ପଚାଶଟି ଟଙ୍କା ଆଣି ରଥଙ୍କୁ ଦେଇ ଲମ୍ବହୋଇ ଦଣ୍ଡବତ ହେଲା । ରଥ ପୁଣି ଖୁଳଲେ ।

ଫଗୁଣ ତେର ଦିନ । ରଥ ମଦନ ସ୍ୱାଇଁଠାରୁ ସବୁ ଟଙ୍କା ଆଗ ବୁଝିନେଇ ଦ' ଘଣ୍ଟା ବାଦେ କହିଲେ ଏଇଟା ଅମୃତ ବେଳ, ଏଇକ୍ଷଣି ଅନୁକୂଳ କର । ରଥଙ୍କ କଥାରେ ସ୍ୱାଇଁ ଜୋଇଁ ବେଶ ହୋଇ ନୋଇଁ ନୋଇଁ ଆସି ସୁଆଗରେ ବସିଗଲେ ।

ବର ଆସିବାକୁ ଚାହିଁ ଜଗୁ ବଶ୍ୱାଳେ ବସିଥାନ୍ତି । ବନ୍ଧୁବାନ୍ଧବ ସବୁ ଉଭା । ରଥ ସୁଆଗରେ ବରନେଇ ପହଞ୍ଚିବାରୁ ସେମାନେ ଭାବିଲେ ବୋଧହୁଏ ବର ବାପ ହେବ । ଜଗୁ ରଥଙ୍କୁ ପଚାରିଲେ ବାବାଜୀ ! ବର କାହିଁ ? ରଥ ସୋଇଁ ବୁଢ଼ାକୁ ଦେଖେଇ କହିଲେ ଏଇପରି ବର । ବେଶ ଦେଖି ଚିହ୍ନି ପାରୁନା । ଏକଥା ଶୁଣି ବଶ୍ୱାଳଙ୍କ ମୁଣ୍ଡରେ ଯେପରି ବଜ୍ରପାତ ହେଲା । ବଶ୍ୱାଳୁଣୀତ କାନ୍ଦ କୋଡ଼ ହୋଇ ଲୁହଲାଳ, ଝିଅଟାକୁ ମୂର୍ଚ୍ଛା ଧରିଲା ।

ଏହାଦେଖି ବନ୍ଧୁବାନ୍ଧବ ପଡ଼ୋଶୀଏ ଅବାକ୍ ହୋଇ ପଚାରିଲେ ଆଚ୍ଛା ଏହାର ରହସ୍ୟ କ'ଣ ବତେଇବଟି ? ରଥେ ଉଠି କହିଲେ ବଶ୍ୱାଳ ସତ୍ୟ କରିଚ ପୁଅକୁଇ ଝିଅ ବାହାଦେବ । ଜଗୁ ବଗିଡ଼ ଉଠି କହିଲା ସାଧୁ ମିଛ କହୁଚ ? ଏହାଙ୍କୁ ଝିଅ ଦେବ କହିଥିଲି କେବେ ? ରଥ କହିଲେ ଆଚ୍ଛା ଆପଣମାନେ ଭଦ୍ରଲୋକ, ପଞ୍ଚପରମେଶ୍ୱର, ଆମ ସତ୍ୟ ସୂତ୍ରତ କର କହିବା କଥା ମୁଁ କହୁଛି ଶୁଣନ୍ତୁ, ତାକୁ ପଚାର ବୁଝି ଛନ୍ତି, ସେ ଏହିରେ ଶୁଣି ମତ ଦେଇଛି କି ନାହିଁ । ଭଦ୍ର ଲୋକମାନେ ଜଗର ମତ ନେଇ ଶୁଣିଲେ । ରଥ କହିଲେ ବର ଦେଖିବାକୁ ଶ୍ରୀକୃଷ୍ଣଙ୍କପରି ମଦନ ମୋହନ ! ବୟସ ତମ ଆମ ବୟସ ହବ । ଯାନ ବାହନ ଅଚଳନ୍ତି । ଘର ଭିତରେ ବସି ଚନ୍ଦ୍ର ସୂର୍ଯ୍ୟ ଦେଖି ହବ । ଝିଅ ଯାଉ, ଯେତେ ଖୁସି ସେତେ

ଖାଉ । ଗୋରୁ ଗାଈ, ଘରେ ଅଧେ ବାହାରେ ଅଧେ । ବିଦ୍ୟା ବୋଇଲେ କୁମାର ସମ୍ଭବର ସବୁ ତଥ୍ୟ ଜାଣନ୍ତି । କହିଛି କ ନାହିଁ । ଭଦ୍ରଲୋକ ପଚାରିବାରୁ ଜଗୁ କହିଲା ହଁ, ଏ କଥା କହିଛନ୍ତି । ସେଇଠୁ କହିଲେ ଆଜ୍ଞା, ଆପଣ ପାଞ୍ଚଜଣ ବୁଝନ୍ତୁ । ବୟସ ଜଗୁର ପଇଁତିରିଶ ଆମର ଅଠତିରିଶ ମିଶି ତେସ୍ତର ହେଲା । ବରଙ୍କ ବୟସ ବାସ୍ତରି । ଏଥିପାଇଁ କହିଥିଲି, ବୟସ ବୋଇଲେ ତମ ଆମ ବୟସ ହେବ । ରୂପରଙ୍ଗ କୃଷ୍ଣଙ୍କ ପରି ମଦନମୋହନ ମୂର୍ତ୍ତି । ଦେଖନ୍ତୁ ହେଙ୍କ ରଙ୍ଗ କଳା, ନାମ ମର୍ଦ୍ଦନ ସ୍ୱାଇଁ । ଘରେ ଯାନ ବାସନ ଅଚଳ ଅର୍ଥାତ୍ ବରଙ୍କ ଘରେ ଖଣ୍ଡେ ଦଦରା ସୁଆର ପଡ଼ିଚି । ବାସନ ବୋଇଲେ ମାଟି ବାସନ ସବୁ । ଗୋଟିଏ ବୁଢ଼ୀ ଗାଈ ଅଛି, ସେ ହାତବନ୍ଧ ପାଡ଼େଇ ଯାଇ ପାରେନା । ପଛରୁ ଉଠେଇ ନ ଦେଲେ ପଛ ଦି'ଗୋଡ଼ ବାହାରେ ରହେ । ଘର ଛପର ଜାଗା ଜାଗା ଉଡ଼େଇ ନେଇ ଥିବାରୁ ରାତିରେ ଚନ୍ଦ୍ର, ଦିନରେ ସୂର୍ଯ୍ୟ ଦେଖାଯାନ୍ତି । ଦୁଇମାଣ ବିଲରୁ ଯାହା ମିଳିବ ଦି' ପ୍ରାଣୀ ଜାଉପାଣି କରି ଖାଇ ଚଳିବେ । ସେ ପାଇଁ କହୁଚି ଝିଅ ଯାଉ, ଯେତେ ଖୁସି ସେତେ ଖାଉ । ବରବୁଢ଼ା ପୁଅଜନ୍ମ କରିବାରେ ଓସ୍ତାଦ୍ । ସେ ପାଇଁ କହୁଚି କୁମାର ସମ୍ଭବ କାବ୍ୟ ନୁହେଁ ପୁଅଜନ୍ମର ସବୁ ଜାଣେ । ମୋ କଥାରେ କୋଉଠି ଗଲତି ଅଛି ଆଜ୍ଞା ! ପଞ୍ଚାଏତ କହିଲେ ନାଇଁ, ତମ କଥା ସବୁ ସତ; ଜଗୁ ସତ୍ୟ କରିଛି ଯେତେବେଳେ ଝିଅ ଦବାକୁ ବାଧ । ଏହାକହି ପଞ୍ଚାୟତ ଭଦ୍ର ଲୋକମାନେ ଚାଲିଗଲେ ।

ଜଗୁର ଝିଅ ସବୁ ଶୁଣୁଥିଲା । ଯେତେବେଳେ ବୁଝିଲା ସେଇ ବୁଢ଼ାକୁ ବାହା ହେବେ । ସେଇଠୁ ଧାଇଁ ସେ କୂଅ ଭିତରକୁ ଡେଇଁ ଦେଲା । ମା' ତାକୁ ଡାକି ଡାକି ଯାଇ ସେ' ବି ଡେଇଁ ପଡ଼ିଲା ସେଇ କୂଅକୁ । ମଦନ ସ୍ୱାଇଁ ବାହା ନ ହୋଇ ଚଲଉଠି ଗଲା । ରଥ

ଚାଲିଲେ ଘରକୁ । ଜଗୁ ବଣ୍ଟାଳେ ଧୂଆଁ ଆଉ ନୂଆଁଅର ମରିବା ଦେହକୁ କୂଅରୁ କାଢ଼ି କୂଅଟାକୁ ପୋତିଦେଲେ । ତା ଉପରେ ଖଣ୍ଡିଏ ପଥର ଖପାଇ ସେଥିରେ ଲେଖିଦେଲେ ଏହା ରଥଙ୍କ ଖଟସୂଅ କବି । ବୁଝିଲୁ ଅବୋଲକରା ! ସେହିଦିନୁ ସେ କୂପ ମୁହଁରେ ସେହି ପଥରଟି ଖପାହୋଇ ରହିଛି । ଏହା କହି ଗୋସେଇଁ ଖାଇବାକୁ ଗଲେ । ଏ ଗଳ୍ପଟିକୁ ମୁଁ ଜନାର୍ଦ୍ଦନ ମାଷ୍ଟରଙ୍କଠାରୁ ଶୁଣିଥିଲି ।



## ପୁଅର ରକ୍ତରୁ ମିତ୍ରର ମୁକ୍ତି

ଗୋସେଇଁ ଅବୋଲକରା ଦିହେଁ ତା ପରଦିନ କାଶୀବାଟ ଗଲା ପରେ ଗୋଟିଏ ସହର ପାଖରେ ଧର୍ମଶାଳାଟିଏ ଦେଖି ରହିଲେ । ଗୋସେଇଁ କହିଲେ ଅବୋଲକରା ! ଆଜ ରାତିଟା ଏଇଠି ରହିଯିବା ତୁ ଟଙ୍କାଟିଏ ନେଇଯା, ସହରରୁ ଫେଣାଏ କଦଳୀ କିଛି ବୁଟଛତୁ ଆଣିବୁ । ଆଜ ରାତିଟା ସେଥିରେ ଚଳିଯିବା । ଏହାଶୁଣି ଅବୋଲକରା ଗଣ୍ଠିଲି ଆଉ ଟଙ୍କା ନେଇ ସହରକୁ ଗଲା । କିଛି ସମୟ ବାଦେ ଅବୋଲକରା ମୁହଁ ଗେର ଗେର କରି ଆସି ଛତୁଆ କଦଳୀ ଥୋଇ କହିଲା ଏଇଠି ଥାଅ ଗୋସେଇଁ ମୁଁ ଘରକୁ ଫେରୁଚି ।

ଗୋସେଇଁ କହିଲେ ପୁଣି କ'ଣ ତୋ ମୁଣ୍ଡରେ ଭଅଁର ବାହାରିଲାନା କ'ଣରେ ? ଆରେ ପୁଣି କୋଉଠି କିଛି ଦେଖିଲୁ କି ? ଅବୋଲକରା କହିଲା ହଁ ଗୋସେଇଁ ! ବଜାରକୁ ଯାଇ ଦେଖିଲି ପଞ୍ଚାଏ ଲୋକ ଭିଡ଼କରି ଛିଡ଼ା ହୋଇଛନ୍ତି । କ'ଣ ହଉଚି ଦେଖିବାକୁ ଯାଇ ଦେଖିଲି ବେଳକୁ ଆହା ! କ'ଣ କରିବି ଗୋସେଇଁ ଗୋଟିଏ ଯୁବକ ଦି' ଦିନର ପୁଅ ପିଲାଟିଏ ଆଣି ଗୋଟାଏ ପଥର ମୂଳିରେ

ବାଡ଼େଇ ମାରୁଦେଲା । ହେଲେ ସେ'ତ ଯୋଉ ରକ୍ତ ହିଂ, ସେଗୁଡ଼ାକ ପଥର ଦେହରେ ଲାଗିବାରୁ ସେ ମୂର୍ତ୍ତିଟା ଗୋଟିଏ ଯୁବକ ହୋଇଗଲା । ପୁଣି ସେଇ ଯୁବକଟି ସେଇ ମରାପିଲାଟାକୁ ଧରି ଗୁଣ୍ଡରେ ଯାକବାରୁ ସେ ପିଲାଟି ବି ବଞ୍ଚି ଉଠିଲା । ଏହାର କାରଣ ମୋତେ ନ କହିଲେ ମୁଁ ତ ଯିବି ନାହିଁ ଗୋସେଇଁ ।

ଗୋସେଇଁ ବିରକ୍ତ ହୋଇ କହିଲେ ଆରେ ଆଣ୍ଠୁ କୋଡ଼ ପୁଅ । ସବୁ କଥା ମୋତେ ଜଣାଅଛୁ ଯେ ତୋତେ କହୁଥିବି ? ଆଚ୍ଛା, ଖିଆ ପିଆ କରି ବସ, ତା' ପରେ କଥା କହିବା । ଏହା-କହି ଦହେଁ ଖିଆପିଆ କରି ଗୋସେଇଁ ଶୋଇବାରୁ ଅବୋଲକରା ତାଙ୍କ ଗୋଡ଼ଟିପି ଦେଲା । ଗୋସେଇଁ କହିଲେ—

'ଦଅଳ ଆଖି ଟେକ ମଥା,
ଅବୋଲକରାରେ ଶୁଣ ସେ କଥା''

ଅବୋଲକରା ଆଖି ଦଳ ମଳ ବସିବାରୁ ଗୋସେଇଁ କହିଲେ ଏ ଦେଶର ନାମ କାଞ୍ଚି । ଏଠି ଶ୍ରୀଚନ୍ଦନ ବୋଲି ଜଣେ ରଜାଥିଲେ । ରଜାଙ୍କର ପୁଅ ନାହିଁ, ମନ୍ତ୍ରୀଙ୍କର ବି ପୁଅ ନାହିଁ । ଥରେ ସାକ୍ଷୀ-ଗୋପାଳଙ୍କଠାରେ ଧରା ପଡ଼ିବାରୁ ଗୋପାଳ ହୁକୁମ ଦେଲେ ଉଠଯା । ମନ୍ଦିର ଦ୍ୱାରେ ଯାହା ପାଇବୁ ତାକୁ ନେଇ ଖାଇଦେବୁ । ସେଇଥିରେ ତୋ ମନବାଞ୍ଛା ପୂରିବ ।

'ଯାହାର ଆଜ୍ଞାରେ ପର୍ବତ, ଜଳେ ଭାସଇ ସୋଲବତ' ତାଙ୍କ ଆଦେଶ କି ବିଫଳ ହେବ ? ରାଣୀ ସେଠୁ ଉଠି ଆସି ଦେଖିଲେ ମନ୍ଦିର ଦୁଆରେ ଗୋଟିଏ ପରିଡ଼ ପଡ଼ିଚ । ସେଇଟାକୁ ଆଣି ରଜାଙ୍କୁ ଦେଖେଇ ଗୋପାଳଙ୍କ ଆଦେଶ କଥା କହିବାରୁ ରଜା ମନ୍ତ୍ରୀ ବିଚାରି କହିଲେ ଗାଧୁଆ ପାଧୁଆ କରି ଶ୍ରୀ ଗୋପାଳଙ୍କ ମନ୍ଦିରକୁ ପୂଜା

ସାମଗ୍ରୀ ଦେଖାଇ ତା’ ଘରେ ଫଳର ଜଳ ଖା’ନ୍ତୁ । ରାଣୀ ସେହିପରି କରି ଘଇଡ଼ଟି କାଟି ପାଣିତକ ପିଇ ଦେଲେ । ଖୋଳଟାକୁ ଫୋପାଡ଼ି ଦେବାରୁ ସେ ଗୋଟିକୁ ମନ୍ତ୍ରୀ ଗୁପ୍ତକରି ଘେନ ଆସିଲେ ।

ମନ୍ତ୍ରୀଙ୍କ ସ୍ତ୍ରୀ ତ ବନ୍ଧ୍ୟା । ମନ୍ତ୍ରୀ ସେଇ ଖୋଳଟି ଆଣି ସ୍ତ୍ରୀଙ୍କୁ କହିଲେ ଗୋଡ଼ଧୋଇ ଆସି ଏଥିରେ ଥିବା ଶଶତକ ଶ୍ରୀଗୋପାଳଙ୍କ ନାମ ନେଇ ଖାଇଦିଅ । ଦେଖିବା କ’ଣ ହଉଛି । ମନ୍ତ୍ରୀଆଣି ମନ୍ତ୍ରୀଙ୍କ କଥାମାନ ସେପରି କଲେ ।

କିଛିଦିନ ବାଦେ ରାଣୀଙ୍କର ଓ ମନ୍ତ୍ରୀ ଭାର୍ଯ୍ୟାଙ୍କର ଗର୍ଭ ହେଲା । ମାସ ହେବାରୁ ଦିହେଁ ଏକୋଦିନେ ଦୁଇଟି ସୁନ୍ଦର ପୁଅ ଜନ୍ମ କଲେ । ରଜା ପୁଅର ଜନ୍ମ ଉତ୍ସବ ହେଲା । ମନ୍ତ୍ରୀ ପୁଅକୁ ଲୁଚେଇ ରଖିଲେ । ଦିହେଁ ଦୁଇ ଜାଗାରେ ବଢୁଥାନ୍ତି । ରଜାପୁଅ ନାମ ରତ୍ନାକର । ମନ୍ତ୍ରୀ ନେଇ ରଖି ନିଜ ପୁଅ ନାଁ ଗୁଣାକର ଦେଲେ । ଦିହେଁ ଦୁ’ ଜାଗାରେ ବଢି ବଢି ଉପନୟନାଦି କାର୍ଯ୍ୟ ସାରିଲେ ।

ଦିନେ ରାଜା ମନ୍ତ୍ରୀ କିଛି ଗୋଟାଏ ଗୁପ୍ତ ମନ୍ତ୍ରଣା ନେଇ ନଗରେ ଲାଗେ ବୁଲୁ ବୁଲୁ ମନ୍ତ୍ରୀପୁଅ ସେଇବାଟେ ଆସି ଡାକିଲା ବାପା : ତା ଡାକ ଶୁଣି ରଜା କହିଲେ କ’ଣ କରେ । ଆରେ ତୁ କିମିତି ଏଠିକି ଆସିଲୁ ରତ୍ନାକର ?

ବାଳକଟି କହିଲା ମୁଁ ରତ୍ନାକର ନୁହେଁ । ମୋ ନାଁ ଗୁଣାକର । ଏକଥା ଶୁଣି ରାଜା ବିସ୍ମୟ ହେବାରୁ ମନ୍ତ୍ରୀ ମୃଦୁ ହସି କହିଲେ ସେ ରାଜକୁମାର ନୁହେଁ, ଆମ ପୁଅ ଗୁଣାକର । ରାଜା ଦେଖିଲେ ଗୁଣାକରକୁ ଦେଖିବାକୁ ଅବିକଳ ରତ୍ନାକର ଭଳି । ସେଇଠ ମନ୍ତ୍ରୀଙ୍କୁ ପଚାରିବାରୁ ମନ୍ତ୍ରୀ କହିଲେ ଯୋଉଦିନ ରତ୍ନାକରର ଜନ୍ମ ସେଇଦିନ ଏ ଗୁଣାକର ଜନ୍ମ ହୋଇଛି । ଏସବୁ ଗୋପାଳଙ୍କ କୃପାରୁ ଆଜ୍ଞା । ରଜା କହିଲେ ପୁଅକୁ ଦଶବର୍ଷ ହେଲାଣି, ଆମକୁ

ଦେଖେଇ ନାହିଁ ମନ୍ତ୍ରୀ । ହଉ ଆଜ ମୁଁ ଗୁଣାକରକୁ ନେଇଯାଉଛି ରତ୍ନାକର, ଗୁଣାକର ଏକ ସଙ୍ଗରେ ରହି ପଢ଼ିବେ । ମନ୍ତ୍ରୀ କରିବେ କ'ଣ । ରଜା ଆଦେଶକୁ ଅପିଲ ଅଛି ନା ସ୍ୱର୍ଗକୁ ଯିବାର ନିଶୁଣି ଅଛି ? ହଉ ଯାଉ ବୋଲି କହିଦେଲେ । ସେଇଠୁ ରଜା ଗୁଣାକରକୁ ନେଇ ରତ୍ନାକର ସଙ୍ଗରେ ବନ୍ଧୁତା କରେଇ ଦେଲେ । ଦିହେଁ ମଉସା ହୋଇ ରାଜବାଡ଼ିରେ ରହି ଖାଇ ପଢ଼ନ୍ତି । ଏମିତି କରି ଦିହିଙ୍କୁ ସତର ବର୍ଷ ହେଲା ।

ଦିନେ ଦୁଇ-ମିତ୍ର ଗୋଟାଏ ଜାଗାରେ ବସି ବିଚାର କଲେ । ରତ୍ନାକର କହିଲା ମଉସା ! କିଛି ଭଲ ଲାଗୁନାହିଁ କାହିଁକି । ଗୁଣାକର କହିଲା ଚାଲ ମଉସେ କୁଆଡ଼େ ଟିକିଏ ବୁଲିବୁଲି କରି ଆସିବା । ବୁଢ଼ାଙ୍କ ଅନ୍ନେ ଆଉ ସୁବିଧା ମିଳିବ ନାହିଁ । ଦୁଇଜଣ ସେଇ ବିଚାର କରି ତହିଁ ଆବେଦନ ଦୁଇଟି ଘୋଡ଼ା କିଛି ଟଙ୍କା ସୁନା ଧରି ଚିଠି ଲେଖିଦେଇ ଘରୁ ବାହାରି ଗଲେ ।

ଘୋଡ଼ା ଚଢ଼ି ବନେ ଚଳନ୍ତି କୁମାର
ଦେଖନ୍ତି ପାହାଡ଼ ପଶୁ ପକ୍ଷୀ ଅସୁମାର ।
କାହିଁ ଗଡ଼େ ଅଜଗର କେଉଁଠି କୁମ୍ଭୀର
ଫୁଲ ଫଳ ଧରି ବନ ଦିଶଇ ରୁଚିର ।
ନାହିଁ କେ ଜନ ମାନବ ପଥେ ଲାଗେ ଭୟ
ପଦପାତେ କୁଳପରି ମଣନ୍ତି ଉଭୟ ।
କାଠି ପଡ଼ିବା ଶବଦକୁ ମଣନ୍ତି ସେ ଡିଙ୍କି
ପକ୍ଷୀ ଡେଣାପିଟି ଗଲେ ଉଠନ୍ତି ଚହିଙ୍କି ।
ଏପରି ଭୟରେ ବେନି ମିତ୍ର ଯାନ୍ତି ଚଳି
ଅଗମ୍ୟ ବନେ ନ ଦିଶେ ଦିଗ ପଥାବଳି ।
ଅନୁମାନେ ଘୋଡ଼ା ଚଢ଼ି ଚଳନ୍ତି କୁମାର
କ୍ରମେଣ ମାଡ଼ି ଆସିଲା ରାତି ଅନ୍ଧକାର ।

ଗତ ଜାଣି ମିତ୍ର ବେନ ଏକବୃକ୍ଷ ଡାଳେ
ଅଶ୍ୱବାନ୍ଧ ଆରୋହିଲେ ଯାଇ ବୃକ୍ଷଡାଳେ ।
ବଢ଼ିଲା ଅନ୍ଧାର ବେଶି ନିଶା ଅଧବେଳେ
ଦୂରରୁ ଆଲୋକ ଜ୍ୟୋତି ଆସିଣ ଉଜ୍ଜ୍ୱଳେ ।
ଦେଖୁ ଦେଖୁ ସେ ଆଲୋକ ହୋଇଲା ନିକଟ
ସର୍ପମଣି ଆଲୋକ ସେ ଜାଣିଲେ ଦ୍ୱି' ମିତ୍ର ।
ଫଣା ଶିରେ ମଣି ଧରି ଆସି ବୃକ୍ଷମୂଳେ
ଅଶ୍ୱ ବେନିଙ୍କୁ ଭକ୍ଷଣ କରି ସର୍ପ ଚଳେ ।
ଶିରୁ ମଣି ତଳେ ଥୋଇ ପାଖ ସରୋବରେ
ଜଳପାନ କଲା ମଣି ରଖି ଲାଞ୍ଜ ଘେରେ ।
ମଣି ଦେଖି ଗୁଣାକର ବୃକ୍ଷରୁ ଓହ୍ଲାଇ
ଦେଲା ମେଞ୍ଚାଏ କାଦୁଅ ମଣିରେ ପକାଇ ।"

ମଣି ଗୁପ୍ତ ହେବାରୁ ସବୁ ଅନ୍ଧକାର ହୋଇଗଲା । ପାଣି ପିଇସାରି ଅଜଗରଟା ଉଠି ଦେଖେ ସବୁ ଅନ୍ଧାର । ମଣିହରା ଫଣୀଟି ଦୁର୍ବଳ ହୋଇ ଗର୍ଜନ କଲା । ସେତେବେଳକୁ ଗୁଣାକର ମୂଷା ଭଳି ଗଳି ଗଳି ସେଠାରୁ ଯାଇ ବହୁତ ଦୂରରେ ଗୋଟିଏ ଗଛରେ ଚଢ଼ି ଦେଖୁଥାଏ । ବହୁତ ବେଳଯାଏ ଦୁର୍ବଳ ଅଜଗରଟା ଏପାଖ ସେପାଖ ମୁହଁ ବୁଲେଇ ମଣି ଖୋଜି ଆଉ ଝୁଲି ପାରିଲା ନାହିଁ । ସେହି ଜାଗାରେ ଗୋଟାଏ ମେଘ ଗର୍ଜନ ଭଳି ରଡ଼ି ଛାଡ଼ି ଢଳି ପଡ଼ିଲା ।

ରାତି ସେତେବେଳକୁ ପାହି ଆସିଲାଣି । ଗୁଣାକର ଭାବିଲା ସାପଟା ମରିଗଲା ନା କ'ଣ ? ଆଉ ଶବ୍ଦ କରୁ ନାହିଁତ । ଏହାଭାବି ସେ ଧୀରେ ଧୀରେ ଆସି ଦେଖିଲା ସାପଟା ପାହାଡ଼ ପରି ପଡ଼ିଛି । ତାକୁ ଦେଖି ଗୁଣାକର ଭାବିଲା କେଜାଣି ବାବା—

"ମଣିନାଭୂଷିତଃ ସର୍ପଃ କମ୍ ସୌ ନ ଭୟଙ୍କରଃ"

ମଣି ଯେବେ ଭୁଲୁଥିଲେ ବି ସାପକୁ ବିଶ୍ୱାସ ନାହିଁ । ପୁଣି ଏ'ଟା 'ଅଜଗରକୁ ଦାତାରାମ' ମୁହଁରେ ପଡ଼ିଲେ ଗିଳିଦେବ । ପଛଆଡ଼କୁ ଯାଇ ଦେଖିବା । ଏହାଭାବି ପଛଆଡ଼େ ଗୋଟାଏ ଗଛରେ ଚଢ଼ି ଛୁରିଟା ତା ମୁଣ୍ଡକୁ ମାରିବାରୁ ଦୁର୍ବଳ ସାପଟା ମରିଗଲା । ତାକୁ ମାରି ଗୁଣାକର କାତୁଅରୁ ମଣିଟି ଉଠାଇ ସେହି ପୋଖରୀରେ ଧୋଇବାରୁ ମଣି ଆଲୁଅରେ ଦେଖିଲା ସେଇ ପୋଖରୀ ଭିତରେ ଗୋଟାଏ ପାହାଡ଼ିଆ ସିଡ଼ି ଦେଖା ଯାଉଛି । ତାକୁ ଦେଖିବାରୁ ମଣି ସାହାଯ୍ୟରେ ପାଣିରେ ବୁଡ଼ି ସେଇ ସିଡ଼ି ଦେଇ ଗୁଣାକର ବହୁତ ତଳକୁ ଓହ୍ଲାଇ ଗଲା । ସେଠାରେ ଯାଇ ଦେଖିଲା—

"ମଣିମୟପୁର ଦିଶଇ ରୁଚିର ଅଳକା ନଗର ଜିଣି
ମାଣିକେ ସେ ପୁର ଗଠନ ଅଛି ଏକ ବାଳାମଣି ।
ରତନ ପଲଙ୍କେ ଶୋଇଛି ଷୋଡ଼ଶୀ ଉରୁବଶୀ ରୂପ ଜିଣେ
କଜଳ-ଅଜଡ଼ା-ସଜଡ଼ା ଜୁଡ଼ା ତା ଯୁବକ ମନକୁ କିଣେ ।
ଠ ବର୍ତ୍ତୁଳ ମୁଖ ତା ନତ ବୁକୁପରେ ରତନ ମାଳିକା
ବିଚ୍ଛୁରି ଦେଇ ଚେରିଛି ସୁହାଣୀ ହାଣିଲା ଦେଖି ବାଳିକା ।

ତା ଆଖି ବାଣରେ ଗୁଣାକର ନ ଟଳି ପଚାରିଲା ତୁମରି ପରିଚୟ କ'ଣ, ଏଇ ନିର୍ଜନ ପୁରରେ ଏକା ରହିଚ କାହିଁକି ? କନ୍ୟା ଉଠି ବସି ପଚାରିଲେ ଆଗେ ତୁମ ପରିଚୟ ଦିଅ । ତା'ପରେ ମୁଁ ପରିଚୟ ଦେବି ।

ସାଧାରଣତଃ ସୁନ୍ଦରୀ ଝିଅଙ୍କ କଥାରେ ତ ଯୁବକଙ୍କର ଦୁର୍ବଳତା ଆସେ । ସେଠାରେ ସେମିତି ଗୁଣାକର କହିଲା ମୁଁ କାଞ୍ଚି ରାଜାଙ୍କ ମନ୍ତ୍ରୀ ପୁଅ । ମୋ ନାଁ ଗୁଣାକର, ଏଥର ତମ ନାଁ କୁହ । କନ୍ୟା ମୁରୁକି ହସି କହିଲା ମୋ ନାଁ ମଣିମାଳା, ଆମର ଏ ନଗରୀ ନାଁ ମଣିଜଙ୍ଗ । ମୋ ବାପାଙ୍କ ନାଁ ହେଲା ମଣିଚୂଳ । ସିଏ ଗୋଟିଏ ତପସ୍ୱିନୀକୁ ନ ଜାଣି ରାଣୀ କରି ଆଣିବାକୁ ବାହାରିବାରୁ ତାହାର

ଅଭିଶାପରେ ସାପ ହୋଇ ଆମ ବଂଶକୁ ଖାଇଛନ୍ତି । କେବଳ ମୋତେ ସ୍ନେହକରି ବଞ୍ଚାଇଛନ୍ତି । ଏଇକ୍ଷଣି ସେ ବାହାରୁ ବୁଲି ଆସି ତମକୁ ଗିଳି ଦେବେ । କିନ୍ତୁ ତମକୁ ଦେଖି ମୋ ମନ ଅଧୀର ହଉଚି, ବଞ୍ଚେଇବି କିମିତି ? ତମେ ଏଠାକୁ କିପରି ଆସିଲ ?

ଗୁଣାକର କହିଲା ଆମେ ଦୁଇମିତ୍ର ବିଦେଶକୁ ବୁଲି ଆସିଥିଲୁ । ରାତି ହବାରୁ ଗୋଟାଏ ଗଛରେ ଚଢି ରହିଥିଲୁ । ଏଇବେଳେ ଗୋଟାଏ ଅଜଗର ସାପ ଆସି ଘୋଡ଼ା ଦି'ଟାକୁ ଗିଳି ଦେଲା । ତେଣୁ ମୋର ରାଗ ହେଲା, ମୁଁ ଦେଖିଲି ଅଜଗରଟା ମୁଣ୍ଡରୁ ମଣି କାଢ଼ି ରଖି ପାଣି ପିଇବାକୁ ଗଲା । ମୁଁ କୌଶଳ କରି ତା'ର ଏଇ ମଣିଟାକୁ ନେଇ ଯିବାରୁ ସାପଟା କୋଡ଼ କରୁଡ଼ି ହେଲା । ତେଣୁ ମୁଁ ତାକୁ ଖଣ୍ଡା ବିନ୍ଧି ମାରିଦେଲି । ସେ ମଣିଟିକୁ ନେଇ ପୋଖରୀ ଜଳରେ ଧୋଇଲା ବେଳେ ଗୋଟିଏ ସିଡ଼ି ବାଟ ଦିଶିଲା । ସେହି ବାଟ ଧରି ଏଠାକୁ ଆସିବାରୁ ତୁମକୁ ପାଇଲି ।

ତା କଥା ଶୁଣି ମଣିମାଳା ବଡ଼ ଖୁସି ହେଲା । କହିଲା, ସେଇ ଅଜଗର ହଉଚି ମଣିଚୂଳ ରଜା, ମୁହିଁ ତାଙ୍କର ଝିଅ । ଯିଏ କୁକର୍ମ କଲା ସିଏ ମଲା । ବାପା ହେଲେ ମୁଁ କ'ଣ ସାପଟା ମୁହଁରୁ ଉବୁରି ଥା'ନ୍ତି । ଦିନେ ସେ ମୋତେ ବି ଗିଳିଥାନ୍ତା, ଯା ହଉ ତୁମେ ମୋତେ ଉଦ୍ଧାରିଲ । ମୁଁ ତୁମକୁ ବରଣମାଳା ଦେବି । ଏହାକହି ସେ ବେକରୁ ଗୋଟିଏ ରତ୍ନମାଳୀ ବାହାର କଲାବେଳକୁ ଗୁଣାକର କହିଲା ଥାଉ, ଥାଉ । ତମେ ରଜାଝିଅ ହୋଇ ମନ୍ତ୍ରୀ ପୁଅକୁ ବାହାହବ କାହିଁକି ? ମୋର ଗୋଟିଏ ରଜାପୁଅ ବନ୍ଧୁ ଅଛି । ମୁଁ ତାକୁ ଆଣି ଦଉଚି, ତୁମେ ତାଙ୍କୁ ବାହା ହବ ।

ଏ କଥାରେ ମଣିମାଳା ଆହୁରି ଖୁସି ହୋଇ କହିଲା ସିଏ କାହାନ୍ତି । ଗୁଣାକର କହିଲା ଥୟଧର । ମୁଁ ଯାଇ ତାଙ୍କୁ ଆଣି

ଦଉଚ । ଏହା କହି ସେ ମଣି ଧରି ତାହାର ଆଲୁଅରେ ଆସି ରତ୍ନାକରକୁ ସେଠାକୁ ନେଇଗଲା । ମଣିମାଳା ଯେମିତି ରତ୍ନାକରକୁ ଦେଖିଲା ଖୁସି ହୋଇ ବରଣମାଳା ଦେବାକୁ ଗଲାବେଳେ ରତ୍ନାକର କହିଲା ବରଣମାଳା ଧରଅ ଆପତ୍ତି ନାହିଁ ହେଲେ ବାହାଘର ଲଗ୍ନବାର ବୁଝି ଆମ ଘରେ ହେବ । ମନ୍ତ୍ରୀ ପୁଅ ବି ସେଇକଥା କହି ବୁଝେଇ ଦେଲା । ସେ ରତ୍ନାକର ପାଖରେ ସବୁ ଘଟଣା କହି ତାକୁ ଏଠାକୁ ନେଇ ଆସିଚି ।

ମଣିମାଳା ସେଥିରେ ଉତ୍ତର କଲା ନାହିଁ । ଭାବିଲା ଅବିବା ଯୁବକମାନେ ତ ସ୍ତ୍ରୀ ପୋଷିବା ପାଇଁ ଅକ୍ଷମ ଭାବି ବାହା ହବାକୁ ମଙ୍ଗୁ ନାହାନ୍ତି । ପୁଣି ଯଦି ମୁଁ ବେଶି ଜିଗର କରେ ଏ ପଳେଇ ପାରନ୍ତି । ଏହା ଭାବି ତାଙ୍କର କଥା ଅନୁସାରେ ବରଣମାଳା ଦେଇ ରହିଲା ।

ଏ ଦୁଇମିତ୍ର ଦେଖିଲେ ତାଗାଟା ନରହିଲା । ସେଇଠି କିଛି ଦିନ ରହି ପରେ କନ୍ୟା ସେନ ଘରକୁ ଆସିବେ ଠିକ୍ କଲେ । କନ୍ୟା ବି ସେମାନଙ୍କର ଭଲ ଚର୍ଚ୍ଚା କଲା । ଏମିତି କରି କିଛିଦିନ ଯିବାରୁ ଦିନେ ଏ ଦୁଇଜଣ ଶୋଇଛନ୍ତି ଭୋରୁ କନ୍ୟା ସେହି ମଣିଟିକୁ ଧରି ସେଇ ପୋଖରୀ ଜଳର ଉପରକୁ ବାହାରି ଆସିଲା । ଘାଟ ଉପରେ ମଣିଟିକୁ ରଖି ପାଣିରେ ବୁଡ଼ି ଗାଧୋଉଥିଲା । ସେତିକି ବେଳେ ରଜନୀ ବୋଲି ମାଲୁଣୀଟିଏ ଫୁଲ ତୋଳିବାକୁ ଯାଇ ଦେଖିଲା ଗୋଟିଏ ଅପୂର୍ବ ସୁନ୍ଦରୀ କନ୍ୟାଟିଏ କ'ଣ ଗୋଟିଏ ଆଲୁଅ ଧରି ଆସି ଭୁଠରେ ଥୋଇ ଗାଧୋଉଚି । ଏହା ଦେଖିବାକୁ ଯାଇ ଦେଖେତ ରାଜକନ୍ୟା ପାଣିରୁ ଉଠିଆସି ଘାଟ ଉପରେ ଥିବା ସେ ମଣିକୁ ମୁଠାଇ ପୁଣି ପାଣିରେ ବୁଡ଼ି ଚାଲିଗଲା । ହେଲେ କନ୍ୟା ରୂପ ମଣି ଆଲୋକରେ ଏପରି ଝଲସି ଗଲା ଯେ ମାଲୁଣୀ ଆଖି ମୁଦି ହୋଇଗଲା ।

ଠିକ୍ ଏହି ସମୟରେ ସେ ଦେଶର ଯୁବକ ରାଜା ପ୍ରାତଃ ଭ୍ରମଣ କରିବାକୁ ଆସି ସେହି ପୋଖରୀ ପାଖରେ ପହଞ୍ଚିଲେ ବେଳକୁ ମଣିମାଳା ରୂପର ଝଲକ ଦେଇ ପୋଖରୀରେ ବୁଡ଼ିଗଲା । ତାକୁ ଦେଖି ରାଜାଙ୍କ ମୁଣ୍ଡରେ ଗୋଟିଏ ବିଜୁଳି ତରଙ୍ଗ ଭଳି କ'ଣ ଖେଳିଗଲା । ଶାସ୍ତ୍ରରେ ଅଛି—

"ନୂନମାଜ୍ଞା କରସ୍ତସ୍ୟାଃ ସୁଭ୍ରୁବୋ ମକର ଧ୍ୱଜଃ
ସତସ୍ତନେନ ସଂସ୍ତର ସୂଚିତେଷୁ ପ୍ରବର୍ତ୍ତିତେ"

ରୂପସୀ ଯୁବତୀର ଆଦେଶ ପାଳନ ଭୃତ୍ୟ ଅଟେ ମକର ଧ୍ୱଜ । ସେମାନଙ୍କ ଆଖି ଇସାରା ମାତ୍ରେ କାମ ସକ୍ରିୟ ହୋଇଉଠେ । ଏଠି ସେମିତି ରାଜା ଦେହରେ କାମଜ୍ୱାଳା ଏପରି ହେଲା ଯେ ରାଜା ଏକବାରେ ପାଗଳ ହୋଇ ବୁଲିଲା । ରାଜାଙ୍କୁ ପାଗଳ ହେବାର ଦେଖି ରାଜମାତା ବଡ଼ ବ୍ୟସ୍ତ ହେଲେ । ମନ୍ତ୍ରୀ ଅନେକ ଗୁଣିଆ ବଇଦ ଅଣେଇ ଭଲ କରି ପାରିଲେ ନାହିଁ । ଦେହ ରୋଗକୁ ସିନା ଔଷଧ ଦେଇ ଭଲ କରିବେ, ମନ ରୋଗକୁ ପାରୁଛନ୍ତି କୋଉଠି । ଏକ ପ୍ରକାର ସବୁ ମୂଳ ବଟିକା ଔଷଧ ଆସିବା ଅକାଟ ହେଲା । ଶେଷକୁ ରାଜମାତା ଘୋଷଣା କଲେ ଯିଏ ମୋ ପୁଅକୁ ଭଲକରି ଦେବ, ତାକୁ ମୋ ରାଜ୍ୟରୁ ଷୋଳଅଣା ଭାଗ ଦେବି । ଏଇ ଘୋଷଣା ଷୋଳଆଡ଼େ ମହାଦ୍ଦ ଜଣାଇ ଦେଲା ।

ସେଦିନ ରଜନୀ ମାଳୁଣୀ ର କନ୍ୟାକୁ ଦେଖିଲାବେଳେ ରଜାଙ୍କୁ ସେ'ଠି ଦେଖିଥିଲା । ସେଇଠୁ ସେ ରାଜା ପାଗଳ ହୋଇଛନ୍ତି ଏକଥା ସେଇ ଏକା ଜାଣେ । ମହାଦ୍ଦରୁ ଘୋଷଣା ଶୁଣି କହିଲା ରଜାଙ୍କୁ ମୁଁ ଭଲ କରିଦେବି । ଏହାକହି ସେ ଆଠୋଟି ଚତୁରୀ ସଖୀ ନେଇ ଯାଇ ସେ ପୋଖରୀ ପାଖରେ ଲୁଚି ରହିଲା । ସେ ଦିନ ରାତି ଶେଷକୁ ମଣିମାଳା ଯେମିତି ମଣି ଘେନି ଆସି ପୋଖରୀ ଘାଟ ଉପରେ ରଖି ପାଣିରେ ବୁଡ଼ ଗାଧୋଇବାକୁ ପଶିଲା, ରଜନୀ

ଦୌଡ଼ିଯାଇ ମଣିଟିକୁ ମୁଠାଇ ଘେନ ଆସିଲା । ଆଉ ସଖୀଙ୍କୁ କହିଲା, ଗୋଟିଏ ସୁନ୍ଦରୀ ଝିଅ ଏଇ ପୋଖରୀରୁ ବାହାରି ଆସିଲେ, ତାକୁ ଧରି ଆଣିବ । ମୁଁ ଯାଉଛି ସୁଆରି ପଠାଇ ଦେବି । ଏହା କହି ସେ ଆସିବାରୁ କିଛି ସମୟ ପରେ ମଣିମାଳା ଉଠି ଦେଖେ ସବୁ ଅନ୍ଧାର, ମଣି ନାହିଁ । ତା ମୁଣ୍ଡ ଚକ୍ରପରି ଘୂରିଗଲା । ଏଇବେଳେ ଆଠଜଣ ମାଇପେ ଯାଇ ଝିଅଟାକୁ ଘେରି ଧରିନେଲେ । ରଜମାକୁ ସୁଆରିରେ ବସାଇ ତାକୁ ରାଜ ବାଡ଼ିକି ନେଇଗଲେ । ରାଜାଙ୍କ ପାଗଳା ଆଖି ଯାହାକୁ ଖୋଜୁଥିଲା ତାକୁ ଦେଖିବା ମାତ୍ରେ ଭଲ ହୋଇଗଲା । ରଜା ହସି ହସି କହିଲେ ସୁନ୍ଦରୀ ! ମୋତେ ପାଗଳ କରି କୁଆଡ଼େ ଲୁଚିଥିଲ ? ରାଜାଙ୍କ ଭଲ କଥା କହିବାରୁ ଶୁଣି ସମସ୍ତେ ଖୁସି ହେଲେ । ରଜମା ମନ୍ତ୍ରୀଙ୍କି କହିଲା—ମନ୍ତ୍ରୀ ମଣିମା ! ଜରୁରି ମୋ ପାଉଣା ଗଣ୍ଡାକ ଦିଅନ୍ତୁ । ତା'ପରେ ମୁଁ ଭଗିଆ ଅମିନଙ୍କୁ ଡକେଇ ରାଇଜ ଭାଗ କରେଇବି । ମନ୍ତ୍ରୀ ତାକୁ ଶହେଟି ଟଙ୍କା ଆଗେ ଦେଇ ବିଦା କଲେ ।

ମଣିମାଳା ଦେଖିଲା ଏଠି ଛଳ କରିବା ଛଡ଼ା ଉପାୟ ନାହିଁ । ଏହା ଭାବି ଏମାନଙ୍କର ବାହାଘର ଯୋଗାଡ଼ ହଉଛି ଜାଣି ରାଜମାତାଙ୍କୁ କହିଲା ମୁଁ ବାର ବର୍ଷିଆ ଗୌରୀ ବ୍ରତ କରିଛି । ନଅବର୍ଷ ଗଲାଣି । ଆଉ ବାକି ତିନିବର୍ଷ । ଏଇ କେଇଟା ଦିନ ଅପେକ୍ଷା କରିବାକୁ କୁହନ୍ତୁ । ତା ପରେ ବାହାଘର ହେବ । ରାଜମାତା ରଜାଙ୍କୁ ସେ କଥା କହିବାରୁ ରଜା କହିଲେ ହଉ, ତିନିଟା ବର୍ଷ କାଲି ପରି ଗଳିଯିବ । ଏମିତି କହି ବାହାଘରୁ ବନ୍ଦ କଲେ । ମଣିମାଳା ଦାସୀ ଘେନ ଉପର ମହଲରେ ରହିଥାଏ ।

ତେଣେ ରତ୍ନାକର ଗୁଣାକରଙ୍କ ଅକାଳ ନିଦ ଭାଙ୍ଗିବାରୁ ଉଠି ଦେଖିଲେ ମଣିମାଳା ନାହିଁ । ରତ୍ନାକର କାନ୍ଦ ପକାଇଲା । ଗୁଣାକର କହିଲା ଥୟ ଧରି ମଇତ୍ର, ଖୋଜି ଦେଖେଁ । ମୁଁ

ନ ଆସିବା ଯାଏ ନିଶ୍ଚିନ୍ତରେ ଥିବ । ମୁଁ ଯେମିତି ହେଉ ମଣି ଓ ମଣିମାଳାକୁ ଆଣି ଦେବି । ଏହା କହି ଗୁଣାକର ଯାଇ ଗଡ଼ଚଣ୍ଡୀ ଠାକୁରାଣୀଙ୍କୁ ପୂଜା କଲା ଓ ତାଙ୍କ ପାଖରେ ଆରାଧନା କରି ପଡ଼ି ରହିଲା । ରାତିକ ଦେବୀଙ୍କ ପାଖକୁ ତାଙ୍କ ସାଙ୍ଗମାନେ ତ ଆସିବାର ବାଟ ନାହିଁ । ଗୁଣାକରଟା ଦୁଆର ମାଡ଼ି ଶୋଇଛି । ବେଶି ରାତି ହବାରୁ ଦେବୀଙ୍କର ଗୋଟିଏ ସାଙ୍ଗ ଚରଶୁଣୀ ଦେବୀ ଆସି ଦେଖିଲା ଟୋକାଟା ଦ୍ୱାର ଅଟକେଇ ପଡ଼ିଛି । ସେଇଠୁ ସେ ବିରକ୍ତ ହୋଇ ଡାକିଲା, ଚଣ୍ଡୀ ! ଗଡ଼ ଚଣ୍ଡୀମା, ଆହେ ଏ ଟୋକା ଯେ ବାଟ ଅଟକାଇ ପଡ଼ିଛି, ଯାକୁ ଆଗେ ଉଠେଇ ଦିଅ । ନୋହିଲେ ଆମେ ଯିବା ଆସିବା କରିବୁ କିମିତି ? ସେଇଠୁ ଗଡ଼ଚଣ୍ଡୀ ଆସି ପଚାରିଲେ କହେ, କ'ଣ ଚାହୁଁ ? ଗୁଣାକର କହିଲା ତୁ ତ ସବୁ ଜାଣୁ । ମୁଁ ଯୋଉ ମଣି ନୂଳକୁ ମାରି ମଣି ଆଣିଥିଲି ତାକୁ ନେଇ ମଣିମାଳା କୁଆଡ଼େ ଯାଇଥିଲା । ଝିଅଟାକୁ ବୋଧେ ବାଘ ଭାଲୁ କଏ ଖାଇ ଦେଇଛି । ବଣଟାରେ ବୁଲାବୁଲି କରୁ କରୁ ବାଘ ଅଜଗର ଯିଏ ଗିଳିଥାଉ ପଛେ, ମୋ ମଣି ଖଣ୍ଡିକ କିମିତି ପାଇବି ବତେଇ ଦେ ।

ଦେବୀ ଗୁଣାକରର କଷ୍ଟ ଦେଖି ହସି ହସି କହିଲେ ନାଇଁରେ, ସେ କନ୍ୟା ମରି ନାଇଁ । ତାକୁ ମଞ୍ଜୁଷା ରଜା ଧରିନେଇ ରଖିଛି । ମୁଁ ତୋତେ ଏଇ ଅଦୃଶ୍ୟ କଳାମନ୍ତ୍ର ଦଉଛି ନେ । ମନ୍ତ୍ର ପଢ଼ି ଏ କଳା ଆଖିରେ ଲଗାଇ ଦେଲେ ଉଡ଼ି ପାରିବୁ, ବୁଡ଼ି ପାରିବୁ, ଯହିଁ ମନ ତହିଁ ଚାଲିଯିବୁ, ସବୁ ଦେଖିବୁ । ତୋତେ କେହି ଦେଖିବେ ନାହିଁ । ଆଉ ଗୋଟିଏ କଥା ଶୁଣି ଯା, ମଞ୍ଜୁଷାରେ ଯୋଉ ରଜମା ମାଲୁଣୀ ଅଛି ସେହି ମଣିଟାକୁ ନେଇ ପେଡ଼ିରେ ରଖିଛି । ତା'ର ଗୋଟିଏ ପୁଅ ଥିଲା । ସେ ଦଶବର୍ଷ ହେଲା କୁଆଡ଼େ ପଳେଇଛି । ସେଇଠିକି ଯା ସବୁ କାର୍ଯ୍ୟ ହେବ । ଏହା କହି ଦେବୀ ଅଦୃଶ୍ୟ ହେଲେ ।

ଏଇବେଳେ ଅଇଲେ ଚଣ୍ଡୀ ବୋଲି ଠାକୁରାଣୀଟିଏ । ପହଞ୍ଚି କହିଲା ଉଠିଲୁ ଉଠିଲୁରେ ଟୋକା ! ଭିତରକୁ ଯିବୁ । ସେଇଠୁ ଗୁଣାକର ଆସି ରତ୍ନାକରକୁ କହିଲା ମଉସା ! କନ୍ୟାର ସନ୍ଧାନ ପାଇଛି । ମୁଁ ଯାଉଛି ତାର ପାଇଁ । ତୁମେ ଭାବନା ନକରି ନିଶ୍ଚିନ୍ତରେ ରୁହ । ଏହା କହି ସେ ମନ୍ତ୍ର ବଳରେ ପୋଖରୀ ପାଣି ଭିତରୁ ଆସି ଉପରେ ପହଞ୍ଚିଲା ।

ସେଠୁଁ କିଛି ଦୂର ଯାଇ ଦେଖିଲା ଗୋଟାଏ ବରାଟ ପାହାଡ଼ । ତାକୁ ଦେଖି ଗୁଣାକର ବାଟ ଭୁଲି ଯିବାରୁ ସେ ଗିରିଙ୍କୁ କହିଲା ହେ ମେରୁ ରାଜା ! ମୋତେ ବାଟ ଦେଖାଇ ଦିଅ । ମୁଁ ନିୟମ କରୁଛି ପ୍ରତିଦିନ ସକାଳେ ଉଠି ତୁମ ନାମକୁ ସ୍ମରଣ କରିବି । ସେଇଠୁ ଗିରି ତାକୁ ପ୍ରସନ୍ନ ହେଲେ । ଗୁଣାକର ଦେଖି ପାରିଲା ଆଗରେ ସହର । ମଞ୍ଜୁଷା ରାଜଧାନୀ । ସେଠୁ ସେ ଗିରିଙ୍କ ନାମ ଦେଲା ନିୟମ ଗିରି । ନିୟମ ପାଳି ଚାଲିବି, ପ୍ରତିଜ୍ଞା କରି ଆଗେଇଲା ।

ସହରରେ ପଶିକରି ଯାଇ ରଜନୀ ମାଲୁଣୀ ଘରେ ପହଞ୍ଚି ଡାକିଲା ମା ! ମୁଁ ଅଇଲିଣି । ଦଶବର୍ଷ ହେଲା ଯାଇ ବହୁତ ଜାଗା ବୁଲି ଦେଖିଛି । ଏଥର ଘରେ ରହିବି । ଆଉ କୁଆଡେ ଯିବିନାହିଁ ।

ମାଲୁଣୀ ଭାବିଲା ଦଶବର୍ଷ ହେଲା ବାହାର ଜାଗାରେ ବୁଲି ପୁଅର ରୂପ ରଙ୍ଗ ବଦଳି ସୁନ୍ଦର ହୋଇଛି । ହଜିଲା ପୁଅ ଖୋଜି ଆସିଛି । ସେଇଠୁ ସେ କୋଟିନିଧି ପାଇଲା ପରି ହୋଇ ପୁଅକୁ ନେଇ ଘରେ ରଖିଲା । ଗୁଣାକର ଖାଇ ପିଇ ନିଶ୍ଚିନ୍ତରେ ରହିଲା ।

ଦି' ଦିନ ଯିବାରୁ ମାଲୁଣୀ ନିଦରେ ଶୋଇଛି, ଏଇବେଳେ ଗୁଣାକର ସଙ୍ଗା ଘଡ଼ିରୁ ପେଡ଼ିଟିକୁ ଆଣି ଫିଟାଇ ଦେଖିଲା ଗୋଟିଏ ଫରୁଆରେ ସେଇ ମଣିଟିକୁ ରଖିଛି । ସେଇଠୁ ମଣିଟିକୁ ଆଣି ଲୁଚେଇ ରଖିଲା ଅଣ୍ଟାରେ । ସକାଳେ ଜଳଖିଆ ଖାଇ ରଜନୀକୁ

କହିଲା ମା ! ମୁଁ ଯାଉଛି ଟିକିଏ ସାଙ୍ଗମାନଙ୍କୁ ଦେଖାକରି ଆସେ । ବୁଢ଼ୀ ଆଛା କହିବାରୁ ଗୁଣାକର ମଣିନେଇ ଛୁ । ବୁଢ଼ୀ ଭାବି ହେଉଥାଏ, ଭଗିଆ ଅମିନକୁ କହି ଯୋଉ ପାଖରେ ଖଣି ଅଞ୍ଚଳ ପଡ଼ିବ ସେଇ ପାଖରୁ ମୁଁ ନେବି । ପୁଅ ମୋର ରଜା ହେବ, ମୁଁ ହେବି ରାଜମାତା ।

ଗୁଣାକର ମଣିନେଇ ନିପ୍ସମଗିରି ଗୁମ୍ଫାରେ ଯାଇ ରହିଲା । ରାତି ହେବାରୁ ଲୋକ ଆସ୍ତେ ଆସ୍ତେ ଶୋଇବାକୁ ଗଲେ । ନିଶବ୍ଦ ବୁଝି ଗୁଣାକର ଅଦୃଶ୍ୟ କଳାମନ୍ତ୍ର ପଢ଼ି ଶୂନ୍ୟ ମାର୍ଗରେ ଉଡ଼ିଆସି ମଣିମାଳା ଯେଉଁ ମହଲରେ ଅଛି ସେହି ମହଲର ଛାତରେ ଓହ୍ଲାଇଲା । ମଣିମାଳାର ମନ ସୁଖ ନାହିଁ । ନିରୋଳା ଛାତରେ ବସି ନାନା କଥା ଭାବୁଥାଏ । ଯେମିତି ଗୁଣାକର ପହଞ୍ଚିଛି ତା'ର କାନ୍ଦଣାର ସୀମା ରହିଲା ନାହିଁ । ଗୁଣାକର କହିଲା—କାନ୍ଦିବା ବେଳ ଇଏ ନୁହେଁ । ମୋ କାନ୍ଧରେ ବସ, ମଣିମାଳା ଲଜ ଲଜ କରୁଥିଲେ ବି ଗୁଣାକର ତାକୁ କାନ୍ଧରେ ବସାଇ ଅଦୃଶ୍ୟ ମନ୍ତ୍ର ବଳରେ ଶୂନ୍ୟରେ ଉଡ଼ି ଚାଲିଗଲା । ସେଇ ପୋଖରୀ ବାଟେ ମଣି, ମଣିମାଳାକୁ ନେଇ ଯାଇ ରତ୍ନାକର ପାଖରେ ପହଞ୍ଚିଲା । ରତ୍ନାକର ମିତ୍ର ଆଉ ମଣିମାଳାକୁ ଦେଖି ହରାଧନ କୋଟିନିଧି ପାଇଲା ପରି ହେଲା । ପରେ ପାଞ୍ଚ ମିତ୍ରଙ୍କ ସହିତ ଦୁଃଖ ସୁଖ ହୋଇ ରହିଲେ ।

ବେଳ ଲଗ୍ନ ବୁଝି ସେଇଠି ବାହାଘର କରିଦେଲେ, କାରଣ ସ୍ୱେଚ୍ଛାରେ ସିନ୍ଦୂର ନ ଦେଲେ ବା ଯାଏ ରୂପସୀ କନ୍ୟା ବେଶୀ ବିପଦ । ବାହାଘର ସାରି ମାସକ ବାଦେ ଛଅଜଣ ଥରେ ଘରଆଡ଼େ ବୁଲିବାକୁ ବାହାରିଲେ । ଦୁଇମିତ୍ର କନ୍ୟାକୁ ପହରା ଦେଇ ଆଣୁଥାନ୍ତି । ଆସୁ ଆସୁ ବାଟରେ ରାତି ହେବାରୁ ଗୋଟିଏ ବରଗଛ ମୂଳରେ ଆଶ୍ରୟ ନେଲେ । ରାତି ବେଶି ହେବାରୁ ରତ୍ନାକର

ମଣିମାଳାକୁ ଘେନି ଶୋଇ ପଡ଼ିଲେ । ଗୁଣାକର ଜଗି ବସିଥାଏ । ସେ ଗଛ ଡାଳରେ ଗୋଟିଏ ଶୁଆକୁ ଶାରୀ କହିଲା ହେ ! ଦେଖିଲଣି ଗଛ ମୂଳରେ କେମିତି ଯୋଡ଼ିଏ ବର ବୋହୂ ଶୋଇଛନ୍ତି । ଏମିତି କନ୍ୟା ତ ଆମ ଦେଶରେ ନାହାନ୍ତି । ଶୁଆ କହିଲା ସୁନ୍ଦରୀ ହେଲେ କ'ଣ ହେବ, କନ୍ୟାକୁ ବିଧବା ଯୋଗ ଅଛି । ସାରୀ କହିଲା ଆହା, କମିତିମ ? ଶୁଆ କହିଲା ପୁଅ ବୋହୂଙ୍କୁ ନବାପାଇଁ ରଜା ଯୋଉ ହାତୀ, ଘୋଡ଼ା ପଠାଇବ, ସେହି ହାତୀଟା ରତ୍ନାକରକୁ ପିଠିରୁ ଫୋପାଡ଼ି ଦେବ । ସେଇ ଆଘାତରେ ଏ ମରିଯିବ । ସାରୀ ଟିକିଏ ନାକରେ ସକେଇ ହୋଇ କହିଲା ଆମ ମାଇପି ଲେକଙ୍କୁ କେତେ ଦଣ୍ଡ କିଏ କହିବ ? ଆଚ୍ଛା ସେଥିରୁ ବଞ୍ଚିତ ହେବ ନାହିଁ ? ଶୁଆ କହିଲା ଯଦି ହାତୀରେ ନ ବସି ଘୋଡ଼ାରେ ଯିବ, କିଛି ହେବନାହିଁ ହେଲେ ଆଉ ଘାଟିରୁ ଉବୁରିଲେ ତ । ସାରୀ କହିଲା ପୁଣି କୋଉ ଘାଟିମ ? ଶୁଆ କହିଲା ରାଜପୁର ଗଡ଼ରେ ପଶିବା ବେଳରେ ପଥର ତୋରଣଟା ତା ଉପରେ ଭାଙ୍ଗି ପଡ଼ିବ, ଇଏ ସେଥିରେ ମରିଯିବ । ସାରୀ କହିଲା ମଲା ମଲା, ଯାହା କହନ୍ତି ପୁରୁଷ ଭାଗ୍ୟ ପତର ତଳେ, ନାରୀଙ୍କ ଭାଗ୍ୟ ପଥର ତଳେ, ବୋଲି ସତକଥା । ହେଲେ ସେଥିରୁ କ'ଣ ଉବୁରିବାର ଯୁ ନାହିଁ ? ଶୁଆ କହିଲା ଇଏ ଯିବା ଆଗରୁ କେହି ଯଦି ସେ ତୋରଣକୁ ଭାଙ୍ଗିଦିଏ ସେ ଘାଟିରୁ ପାରେଇ ଯିବ । ପୁଣି ଆଉ ଘାଟିରୁ ପାରେଇଲେ ତ । ସାରୀ ରାଗରେ ମୁହଁ ଛୁଆଁଇ କହିଲା । ଧେତ୍, ପୁଣି ଗୋଟାଏ ଘାଟି କ'ଣ ? ଶୁଆ କହିଲା ରାଜପୁର ଖାଇବା ବେଳେ ଗୋଟିଏ ବୋଆ ମାଛର କଣ୍ଟା ତା ଗଳାରେ ଲାଗିଯିବ । ସେଇ କଣ୍ଟା ଆଘାତରେ ମରିଯିବ । ସାରୀ କହିଲା କୋଉ ଅଲକ୍ଷଣୀ ସେମିତି ମାଛ ରାନ୍ଧି ଦେବ ଯେ । ଆଚ୍ଛା ହେ ! ସେଥିରୁ କ'ଣ ଉବୁରି ପାରିବ ନାହିଁ ? ଶୁଆ କହିଲା ମାଛ ବାଟିଟା କେହି କାଢିଦେଲେ ବଞ୍ଚିଯିବ । ହେଲେ ବଡ ଘାଟି ଅଛି

ଯେ । ସାରୀ କହିଲା କହୋ ! ଟୋକାଟାକୁ କ'ଣ ଶନିଦଶା ଅଛି ନା କ'ଣ ? ସତକ ପୁଣି କୋଉ ଘାଟି ? ଶୁଆ କହିଲା ଏ ଦୁହେଁ ଫୁଲ ଶେଯରେ ଶୋଇଥିବା ବେଳେ ମଣିଚୁଳ ମାଆ କଳାନାଗ ହୋଇ ଆସି ମଶାରୀ ଭେଡ଼ିଧରି ଯାଇ ରଜାପୁଅକୁ ଚୋଟ ମାରିବ । ସାରୀ ବିସ୍ମିତ ହୋଇ କହିଲା ମଲା, ପୁଚଖିଆଟା ପୁନର୍ଜନ୍ମ ହୋଇବ ଅଧିକା ଯାଇନାହିଁ । ଆଚ୍ଛା ସେଥିରୁ କ'ଣ ବର୍ତ୍ତି ପାରେନା । ଶୁଆ କହିଲା ଯଦି କେହି ନାଗଟା ଆସିବା ସଙ୍ଗେ ସଙ୍ଗେ ତାକୁ କାଟିଦିଏ ତେବେ ରଜାପୁଅ ବଞ୍ଚିବ । ସାରୀ କହିଲା କେହି ଯଦି ଏମିତି କରେ ଆଉ କିଛି ବିପଦ ନାହିଁ ? ଶୁଆ କହିଲା ଅଛି ଏତେ କଥା କିଏ କରିବ । ଯିଏ କରିବ ସେ ଯଦି ଏ କଥା ପ୍ରକାଶ କରିଦିଏ ତାହାହେଲେ ତ ପଥର ହୋଇଯିବ ସେ । ସାରୀ କହିଲା ଉପକାର କରିବ କରିବ ବୋଲି ପଥର ହେବନା କ'ଣ ? ହାୟରେ ଧର୍ମ ! ଆଚ୍ଛା ସେ ପଥରର ପୁଣି କ'ଣ ହେବ ? ଶୁଆ କହିଲା ଏଇ କନ୍ୟା ଗର୍ଭରୁ ଯୋଉ ପହିଲା ପୁଅ ହେବ, ସେଇ ପୁଅକୁ ଏଇ ରତ୍ନାକର ନେଇ ଯଦି ସେହି ପଥରରେ କଚାଡ଼ି ମାରିଦେବ ତା ହେଲେ ସେଇ ରକ୍ତ ଲାଗି ସେଇ ପଥର ପୁଣି ପୂର୍ବ ରୂପ ଲେଉଟି ପାଇବ । ସାରୀ କହିଲା ବାପ ହୋଇ ଶିଶୁହତ୍ୟା କରିବନା ? ଶୁଆ କହିଲା ସେ ପୁଅକୁ ଯଦି ଉପକାରୀଟି କାଟିଲେ ନବ ତାହେଲେ ଶିଶୁଟା ବଞ୍ଚି ଉଠିବ । ହେଲେ ଉପକାରୀଟା ଦେହରେ କିଛି ଦୈବୀ ମନ୍ତ୍ର ତନ୍ତ୍ର ଥାଏ । ତାହା ଅଜ କାର୍ଯ୍ୟରେ ଲାଗିବ ନାହିଁ । ସାରୀ କହିଲା ଗୁଡ଼ ଯେ, 'ପର କଥାରେ ଦୁର୍ବଳ । କାହା ହରିଣୀ କି କିଏ ନେଇ ବାନ୍ଧେ । ପର ଦୁଃଖ ଦେଖି ଘରଣୀ କାନ୍ଦେ' ଶୁଆ କହିଲା ବକର ବକର ନହୋଇ ଶୋଇ ପଡ଼ିବଟି । ସାରୀ ତୁନି ହେଲା ।

ତଳେ ରହି ଜ୍ଞାନାକର ଶୁଆ ସାରୀଙ୍କ କଥା ଶୁଣି ସବୁ ବୁଝିଲା ସିଏତ ପିଲଦିନେ ଶୁଆ ସାରୀ ପାଳି ତାଙ୍କ କଥା ବୁଝିଛି । ଏମାନଙ୍କ

କଥା ବୁଝି ଚୁପ୍ ରହିଲ । ସକାଳ ହବାରୁ ଦିନଜଣ ଉଠ ଆଗେଇଲେ । ରାଜବାଟି ନିକଟ ହବାରୁ ରଜା ଖବର ପାଇ ପୁଅ ବୋହୂଙ୍କୁ ନବାପାଇଁ ଥାଟ ଧରି ଆସିଲେ । ରତ୍ନାକର ପାଇଁ ଯେଉଁ ହାତି ଆସିଥିଲ, ଗୁଣାକର ସେଥିରେ ଆଗ ଉଠି ବସି କହିଲ ମୋ ଘୋଡ଼ାରେ ଚଢି ଚାଲ ମଇନ୍ତ । ରତ୍ନାକର ଘୋଡାରେ ଚଢି ଗଲ । ସେଠୁ ଯାଇ ଘରେ ପହଞ୍ଚିବା ଆଗରୁ ଗୁଣାକର ଆଗେ ଯାଇ ସିଂହଦ୍ୱାର ତୋରଣଟାକୁ ଭାଙ୍ଗି ଦେଲ । ମାଇପେ କହୁଥାନ୍ତି ବୋହୂଟା ଅଲକ୍ଷଣୀ । ଘରେ ଗୋଡ ନ ଦେଉଣୁ ଦୁଆର ଭଙ୍ଗା ।

ସେଠୁ ଯାଇ ଦୁଇମିତ୍ର ଏକ ପାଖରେ ଖାଇ ବସିଲେ । ରାଣୀ ଖାଇବାକୁ ଦେଇ ଯିବାରୁ ଗୁଣାକର ଚଟ୍‌କରି ରତ୍ନାକରର ସେହି ମାଛ ବାଟିଟାକୁ ଘୁଞ୍ଚାଇ ନେଇ ବସିଲ ।

ଏମିତି କରିବା ଦେଖି ରତ୍ନାକର ରାଗ ହେଉଥାଏ । ହେଲେ ଏତେ ବଡ ଉପକାରୀ ମଇନ୍ତକୁ ବା କହିବ କଅଣ ? ତା ଛଡ଼ା ଗୁଣାକର ହିଦ୍ୱାନ, ମନ୍ତ୍ରୀପୁଅ ମଇନ୍ତ, ସେ ଯଦି ଏପରି କରୁଛି ଦେଖାଯାଉ କେଯାଏ କ'ଣ କରିଯାଉଛି । ଦାସେ କହିଛନ୍ତି ।

ବଡ଼ଲୋକ ହୋଇ ନ ଥାଏ ବୁଦ୍ଧି
ବ୍ରାହ୍ମଣ ବୋଲାଇ ନଥାଏ ଶୁଦ୍ଧି
ହାତେ ଖଡୁନାହିଁ ଗୋଡରେ ମଦ
କହେ ଦନାଇ ଏ ନାଲ୍‌ଜ ବୁଦ୍ଧି ।

ଏମିତି ଭାବିରହିଲେ । ରାତି ହେବାରୁ ଫୁଲଶଯ୍ୟା ହେଲା । ସଞ୍ଜବେଳୁ ଗୁଣାକରଯାଇ ସେଇଘରେ ଛୁରୀଟିଏ ଧରି ଲୁଚ ରହିଲା । ଏମାନେ ଖିଆ ପିଆ କରି ଶୋଇବାକୁ ଗଲେ । ମଣିମାଳା, ତ ନୂଆନାଗରୀ ରସସାଗରୀ ତୋଳନ୍ଦିଏ ପ୍ରେମରସ ସାଗରୀ, ପୁଣି ରତ୍ନାକର ହେଉଛି 'ନଆନାଗର, ରସସାଗର, ରସକେଳ କରେ କେତେ ବାଗର' । ଇମିତ କରୁଂ କରୁ ଅନେକ ରାତି ହେଲା । ବହେଁ ନିଦରେ ଶୋଇ

ପଡ଼ିଲେ । ଏଇବେଳେ ଗୋଟିଏ କଳାନାଗ ଝରକା ବାଟେ ଆସି ପଲଙ୍କ ମଶାରୀର ଡୋରି ଉଠିଲା ବେଳକୁ ଗୁଣାକର ଛୁରୀ ଧରି ଆସି ସାପଟାକୁ ଏକାଚୋଟକେ ଦୁଇଖଣ୍ଡ କରି ଗୋଟିଏ ମାଠିଆରେ ପୂରାଇ ଖଟତଳେ ଲୁଚେଇ ଦେଲା ।

ସାପଟାକୁ କାଟିଲା ବେଳେ ତାର ରକ୍ତ ଛିଟିକି ଯାଇଁ ରତ୍ନାକର ଦେହରେ ପଡ଼ିବାରୁ ସେ ଚେଇଁ ଉଠିଲା । ଉଠି ଦେଖେ, ଗୁଣାକର ଗୋଟିଏ ଛୁରୀ ଧରି ଘରୁ ବାହାରି ଆସୁଛି । ସେଇଠୁ ସେ ଚିତ୍କାର କରି ଉଠି ଗୁଣାକରକୁ ଧରି ପକେଇଲା । ଗୁଣାକର କହିଲା ଗୋଳମାଳ ନ କର ଛାଡ଼ିଦିଅ ମିତ । ରତ୍ନାକର କହିଲା ନାହିଁ, ଆଉ ଛାଡ଼ି ନାହିଁ, ତମର ହାଣ୍ଡି ବଦଳଠୁ ହାରିଭଙ୍ଗା ସହୁଛି । ମୋ ସ୍ତ୍ରୀକୁ ସାଇ ମାଇପେ ଅଲକ୍ଷଣୀ ଅଲକ୍ଷଣୀ କହିଲେ । ତାକୁ ବି ସହିଲି । ଖାଇବା ଆହାର ଛଡ଼େଇ ନେଲ, ସହୁଛି । କିନ୍ତୁ···

ଯେ ହୁଏ ପ୍ରାଣର ବଇରୀ
ଗୁରୁ ବ୍ରାହ୍ମଣ ହେଲେ ମାରି ।

ହାସ କଥାକୁ ତ ଟଳେଇ ହେବ ନାହିଁ । ତମର ବିଚାର ହେବ । ତମେ ମୋ ସ୍ତ୍ରୀକୁ ଲୋଭ କରି ଆସି, ମୋ ଶୋଇବା ଘରେ ପଶି, ମୋତେ ଛୁରୀଭୂଷି ମାରିବାକୁ ବସିଥିଲ । ତମେ ପାପିଷ୍ଠ । ତୁମର ପଞ୍ଚାୟତ ବିଚାର ହେବ । ଗୁଣାକର ଯେତେ ବ୍ୟସ୍ତ ହେଲା ରତ୍ନାକର ଛାଡ଼ିଲା ନାହିଁ । ଅନ୍ୟ ଲୋକ ଉଠି ଆସିଲେ, ପାଇକ ଆସି ଗୁଣାକରକୁ ଧରି ନେଇଗଲେ ଗାର୍ଡକୁ । ବିଦୂଷକ କହିଲା 'ବେହିପୋ ବେକୁବ୍ । ଆରେ ରଜାଘର ଖଜାରେ ହାତ ପୂରେଇବାକୁ ବସିଥିଲୁ ନାଁ । ଯା, ଅବକା ପଞ୍ଚାୟତି ସଜା ପାଇଲେ ମଜା ବୁଝିବୁ ସେ' ପାଇକ ଗୁଣାକରକୁ ଗାର୍ଡରେ ଭରି ରଖିଲେ ।

ତହିଁ ଆରଦିନ ପଞ୍ଚାୟତର ମେମ୍ବର ଆସିଲେ । ସଭା ହେଲା । ସମସ୍ତେ କହିଲେ କାରଣ କୁହ ? ଗୁଣାକର କହିଲା କାରଣ ଅଛି ।

ରତ୍ନାକର କହିଲା ସେ ଗୁଣୀ ଚଳିବ ନାହିଁ । ତୁ କାହିଁକି ଛୁରୀ ନେଇ ମୋତେ ମାରିବାକୁ ଯାଇଥିଲୁ କହ ? ନୋହିଲେ ତୋର ଫାଶି ହେବ । ମେମ୍ବରମାନେ କହିଲେ ଦ୍ୱୀପାନ୍ତର । ରଜ୍ଜୁକଅଟା ବି କହୁଥାଏ ନାହିଁ ଆଜ୍ଞା, ଆହାମାନଙ୍କୁ ପଠାନ୍ତୁ ।

ଗୁଣାକର ଦେଖିଲା ଉପାୟ ନାହିଁ । କହିଲେ ପଥର, ନ କହିଲେ ଶୂଳ । ଦୁଇ ଦଗରେ ମରଣ । ତେଣୁ ଦରବାରରେ କହିଲା ମଇଁ ! ମୁଁ ସତକଥା କହିଦେଲେ ପଥର ହୋଇଯିବି । ସେଥି ପାଇଁ ଆଗେ କହୁଚି । ମନେରଖି ସେଇପରି କାର୍ଯ୍ୟ କରିବ । ମୁଁ ତ ଏକଥା ଶୁଣେଇ ପଥର ହୋଇଯିବି । ତୁମେ ତୁମର ଯେଉଁ ପ୍ରଥମ ପୁଅଟି ହେବ; ତାକୁ ନେଇ ସେଇ ପଥର ଉପରେ ନିଜ ହାତରେ ପିଟି ମାରିଦେବ । ତା ରକ୍ତ ପଥରରେ ଲାଗିଲେ ମୁଁ ମଣିଷ ହୋଇ ପୁଣି ତାକୁ ବଞ୍ଚେଇ ଦେବି । ଏତିକ କହି ସେ ସତ କଥା ମୂଳରୁ ଖୋଲି କହିଲା । ଶେଷକୁ ଯେତେବେଳେ କହିଲା ଅବିଶ୍ୱାସ ହେଲେ ପଲଙ୍କ ତଳେ ଦେଖ ଯାଇ, ମାଠିଆରେ ସେ କଳା ନାଗଟାକୁ କାଟି ଥୋଇଚି । ଏତିକ କହିଲା ବେଳକୁ ଗୁଣାକର ପୁରାପୁରି ପଥର ମୂର୍ତ୍ତିଟାଏ ହୋଇଗଲା । ତାକୁ ପଥର ହେବା ଓ ମାଠିଆରୁ ସାପଟି ଦେଖି ଲୋକେ ରତ୍ନାକରକୁ ଛି, ଛାକର କଲେ । ରତ୍ନାକର ବି ବହେ କାନ୍ଦିଲା । ହେଲେ ଶାସ୍ତ୍ର କହେ—

"ଉତ୍ତମଂ ସୁଚରଂ ନୈବ ପଦେଽଭିଭନ୍ତବି
ରାହୁ ଗ୍ରାସନେ ଫେଷୋଦ୍ଭବଃ କ୍ଷଣଂ ବିବିକ୍ତାପ୍ୟୁଦ୍ ବିଧଂ ।"

ଅର୍ଥାତ୍ ସାଧୁ ଲୋକଙ୍କର ବିପଦ ବେଶୀକ୍ଷଣ ରହେ ନାହିଁ । ରାହୁ ଚନ୍ଦ୍ରଙ୍କୁ ଗ୍ରାସକରି ଛାଡ଼ିଦେଲା ପରି ସାଧୁଙ୍କ ବିପଦ କ୍ଷଣସ୍ଥାୟୀ ହୁଏ । ଅଳ୍ପଦିନ ମଝିରେ ମଣିମାଳା ପୁଅଟିଏ ଜନ୍ମ କଲା । ସେଇ ଶିଶୁଟିକୁ ଆଣି ସେଇ ପଥର ମୂର୍ତ୍ତିରେ କଚାଡ଼ିବାରୁ ଗୁଣାକର ନିଜ ରୂପ ଧରି

ଉଠି ସେ ଶିଶୁଟିକୁ ଗୁଣାକର କୋଡକୁ ନବାରୁ ମଲ ଶିଶୁଟି ବଞ୍ଚି ଉଠିଲା । ବୁଝିଲୁଟିରେ ଅବୋଲକରା ! ଏ କଥାଟି ଅନେକ ଲୋକ କହନ୍ତି । ତୁ ଯାହା ଦେଖିଲୁ ସେ ହେଉଛି ସେହି ଗୁଣାକର ଓ ରତ୍ନାକରଙ୍କ ମିତ୍ରତାର ଫଳ । ଏହା କହି ଗୋସେଇଁ ଶୋଇବାକୁ ଗଲେ ।

## ଟଙ୍କା ଝଣି କଥା

ପୁଣି କେତେ ଦିନପରେ କିଛି ବାଟ ଯିବାରୁ ଗୋଟିଏ ହାଟ ସ୍ଥଳଘର ଦେଖି ଗୋସେଇଁ କହିଲେ ଅବୋଲକରା ଆଜକ ଏଇଠି ରହିମିବା । କେଇଖଣ୍ଡି ଜାଳ, ଅଟା କିଛି କିଣି ଆଣ । ଆଜ ରୋଟିକର ଖାଇବା । ଅବୋଲକରା ଟଙ୍କା ନେଇ ଅଟା କିଣି, ଜାଳ କେଇ ଖଣ୍ଡ ଆଣି ଆସିଲା ବେଳେ ଦେଖିଆସି କହିଲା ଗୋଟିଏ ମୂର୍ଦ୍ଦାଟିକୁ ଶୁଆଇ ଦେଇ ହଜାରେ ଭଲ ଲୋକ କାନ୍ଦୁଛନ୍ତି । ବ୍ରାହ୍ମଣଠାରୁ ଚଣ୍ଡାଳ ଯାଏ ସମସ୍ତଙ୍କ ଆଖିରେ ଲୁହ । ଆଉ ଗୋଟିଏ ସ୍ତ୍ରୀଲୋକ ତା ଗୋଡତଳେ ମରି ପଡ଼ିଛି । ଦୁଇଟି ବୁଢ଼ା ଓ ବୁଢ଼ୀଙ୍କି ଦ'ଟା ଖୁଣ୍ଟରେ ବାନ୍ଧି ରଖିଚନ୍ତି । କିନ୍ତୁ ସେ ଦ'ଟା ଵ ମରା ପାଖରେ ଗୋଟିଏ ଟଙ୍କାର ପୁଞ୍ଜି ଥୁଆ ହୋଇଛି । ଯେତେ ଲୋକଙ୍କୁ ପଚାରିଲେ ସମସ୍ତେ କାନ୍ଦିବାରେ ବ୍ୟସ୍ତ । ମୋ କଥାରେ ଜବାବ ଦବ କିଏ ଗୋସେଇଁ । ତମେ ଯଦି ସେ କଥା କହିବତ ରହିବ, ନୋହିଲେ ତମ ଅଟା, କାଠ ରହିଲା, ବାଟକ ବାଟ ଧଇଲା । ଗୋସେଇଁ ବିରକ୍ତ ହୋଇ କହିଲେ ପଣ୍ଡିତ ଯାହା କହନ୍ତି—

'ମର୍ଦ୍ଦନସ୍ୟ ସ୍ଥଟ ଦାସ ଗାପ୍ୟାଳ<br>
ଅଶିକ୍ଷିତା ନାରୀ ଗୋପାଳ ବାଳ ।<br>
ନାବ ଦଣ୍ଡ କାରୁକର୍ମ ଯେ ଭୃତ୍ୟ<br>
ପ୍ରହାର ନଦେଲେ ନୁହେଁ ଆୟତ୍ତ ।

ଏ ତ୍ୟାଗୋ ଦାସଜାତି ବାରକ ଟୋକା, ବନା ମାଡ଼ରେ ସଳଖିବ କାହୁଁ । ହେଲେ ଆମର ଯୋଉ ବୟସ ସେଥିରେ ତ ଚଳିବ ନାହିଁ, ମାଡ଼ ଦବା ମନେଇ ମନେଇ କଥା କବା । ଏହା ଭାବି କହିଲେ ହଉରେ—

'ଖୋଲ ବାସନ ତେଏସ ଅଟା
କହିବା ଅବୋଲକରରେ ସେ କଥା ।'

ଗୋସେଇଁଙ୍କ କଥାଶୁଣି ଅବୋଲକର ଅଟା ଠେସିବାକୁ ବସିଲ । ଗୋସେଇଁ ଭଜ କାଟୁ କାଟୁ କହିଲେ, ଦେଶର ନାଁ ସରଗୁଜା । ଏଠାରେ ଜଣେ ସୌଦାଗର ରହୁଥିଲେ । ତାଙ୍କର ବୁଢ଼ପୁଅ ବୁଢ଼ ବୋହୂ, ସବା ସାନ ବୋହୂଟି ସୁଲକ୍ଷଣୀ । ସିଏ ଶୁଦ୍ଧାବୁର କର ଦନ କାଟେ । କଥାରେ ଅଛି—

'ଆଗୁରେ ଲକ୍ଷ୍ମୀ, ବଗୁରେ ପଣ୍ଡିତ'

ଏ କଥାମାନ ସେ ଚଳେ ।

ବୁଢ଼ାର ବୁଢ଼ପୁଅ ବଣିଜ କର ଧନ ସମ୍ପଦ ବୋହି ଆଣନ୍ତି । ବୁଢ଼ା ଖୁବ୍ ହିସାବ କର ଘର ଚଳାଏ । କଛୁଦନ ପରେ ସାଧବାଣୀ ବୁଢ଼ୀର କାଳ ହୋଇଗଲ । କଥାରେ ଅଛି ଯାହା ଘରେ ନାହିଁ ବୁଢ଼ୀ ତା ଘର ଗଲ ଉଡ଼ି । ବୁଢ଼ୀ ମରିଯିବାରୁ ସୌଦାଗରକୁ ସବୁ ଅନ୍ଧାର ଦଶିଲ । ପୁଣି ଭାବିଲ ଏ ବୟସରେ ବୁଢ଼ୀ ବନା ତ ଘଡ଼ିଏ ଚଳି ହେବ ନାହିଁ । ବୋହୂମାନେ କ'ଣ ସ୍ତ୍ରୀ ଭଳି ସେବା କରିବେ ? ଏହା ଭାବି ନଜେ ବାହା ହବାକୁ ବୁଢ଼ଆଡ଼େ ଘଟସୂଚ ପଠାଇଲ ।

ଅଳପ ବୟସ ହୋଇଥିଲେ ବା କନ୍ୟା ଜୁଟନ୍ତା । ଅଶୀବର୍ଷର ବୁଢ଼ା, ଝିଅ ଦେବ କଏ ? ଏମିତି ଘଟକ ବୁଲୁ ବୁଲୁ ଦେଖିଲ ଯେ ଗୋଟିଏ ହାଟୁଆଣୀ ବୁଢ଼ୀ ପରବା ନେଇ ବକ ଯାଉଚ । ତାକୁ ଦେଖି ଘଟକ; ସିଏ କାହିଁକ ପରବା ନେଇ ବକ ବୁଲୁଚ ପଚାରିବାରୁ ହାଟୁଆଣୀ କହିଲ, ବାପ ବଡ଼ କଷ୍ଟ । ପୁଅ ଘେରସ୍ତ ନାହାନ୍ତି,

ଘରଜମାନେ ପଡ଼ିଏ ବସେଇ ହଉନ୍ତି ନାହିଁ । ସେଇଥିପାଇଁ କଣି ବଙ୍କ ଚଳେ । ଘଟସୂହି ଆଡ ନଦ ନାଗଙ୍କ ବୋଲ ଚଳଣରୁ ବାର ହଉନ୍ତି । କହିଲ ବୁଢ଼ୀ, ତୁ ଯଦ ଆଉ ଗୋଟିଏ ବାହା ହଉ ତୋ ଗୋଡ଼ଠାରେ ଯୋଡ଼ିଏ ଦାସୀ ଖଟିବେ । ରାଜରାଣୀପରି ହୋଇ ରହିବୁ । ବୁଢ଼ୀ କହିଲା, ଆଉ ଏ ବୟସରେ କ'ଣ ବାହା ହଉନ୍ତି ? ଘଟକ କହିଲ ତାର ବ ବୟସ ହେଇଚ । ବୁଢ଼ୀ ତୁ ଆମ କଥା ମାନିଯା ।

ବୁଢ଼ୀ ଦେଖିଲା ବାର ଜାଗାରେ ବୁଲିବାଠାରୁ ଯଦ ଏତେ ସୁବିଧା ମିଳିବ ଛାଡ଼ିବ କାହିଁକି ? ସେଇଠୁ ସେ ଭାବି ଚିନ୍ତି କହିଲା ତାହାହେଲେ ଯୋଗାଡ଼ କରିଦିଅ ବାପା । ତୁମର ଧର୍ମ ହେବ । ତାକୁ ବଙ୍କ ହେବାର ଜାଣି ସଙ୍ଗରେ ନେଇଆସି ଘଟକ ନିଜ ଘରେ ରଖି ବୁଢ଼ାକୁ ଖବର ଦେଲା । ବୁଢ଼ା ଶୁଣି ଖୁସି ହୋଇ ଘଟକକୁ ଟଙ୍କେଟଙ୍କା ଦେଲା । ଟୁକ୍କେର ଆଁ‌ଧି ବାହା ହୋଇ ପଛେ ଆସି ବନ୍ଧୁବାନ୍ଧବଙ୍କୁ ଜଣେଇଲା । ଘଟକ ଦେଖିଲା ବରକୁ କନ୍ୟା ଠିକ୍ ହେଇଚି । କଥାରେ ଅଛି, 'ଗୀତ ନାଶଯାଏ ବାଟରେ, ପୁଅ ନାଶଯାଏ ନାଟରେ, ବୁଦ୍ଧି ନାଶଯାଏ ଖଳମେଳ ହେଲେ, ନାରୀ ନାଶଯାଏ ହାଟରେ' । କୃପଣ ବୁଢ଼ାକୁ ହାଟୁଆଣୀ ବୁଢ଼ୀ ହେଇଚି । ଯା' ହେଉ ମିଳୁ ନଥିବାରୁ ମିଳିଛି ଯେତେବେଳେ ବୁଢ଼ା ହାଟୁଆଣୀକି ଆଣି ମାଲିକଆଣି କରି ଥୋଇଲା ।

ଘରେ ଆସି ବୁଢ଼ା ବୋହୂଙ୍କୁ ଡାକ କହିଲା ପୁରୁଣା ବଦଳ ନୂଆ ହଉ । ଇଏ ତୁମର ନୂଆ ଶାଶୁ ହେଲେ, ଇଏ ପୁରୁଖା ଲୋକ । ଯାହା ବତେଇବ ତା କଥା ମାନି ଚଳିବ । ଯିଏ ନ ମାନିବ ତାକୁ ଘରୁ ତଡ଼ିଦେବ । ବୋହୂଏ କହିଲେ ହଉ କରିବା । ସେଇଠୁ ବୁଢ଼ୀ ସାଧବ ଘରର ଚୁଲି ରୀତିମାନ ବଦଳେଇ ଦେଲା । ବୋହୂଏ ତ ଫୁଲ ଫାଙ୍କିଆ ଖୋଜୁଥାନ୍ତି, ଇଏ କହିଲା, ସକାଳେ ଗୋଟାଏ

ଉଠିବ କ'ଣ । ବଡ଼ ଲୋକର ବୋହୂ, ପୋଇଲା ଶୁକର ସକାଳେ ଉଠି କାମ କରିବେ । ବୋହୂ କହିଲେ, ହଉ ଆମ୍ଭେ ନ'ଟା ବେଳକୁ ଉଠିବା । ସେହିପରି ତିନ ବୋହୂ କଲେ । କିନ୍ତୁ ସାନ ବୋହୂ ଦେଖିଲା ଏପରି ଅନିଷ୍ଟ କରି ଚଳିଲେ ଲକ୍ଷ୍ମୀ କ'ଣ ରହିବେ ? ସେ'ଟା ଗୋଟାଏ ଅକୁଳିଆଣୀ କୁଆଡ଼ୁ ଆସି ରହିଚି, ଜାଣେ କ'ଣ ? ସେ ସକାଳେ ଉଠି ପବିତ୍ର ପାଣି ପକେଇ ବାସୀ କାମ ସାରି ଗାଧୋଇ ଲକ୍ଷ୍ମୀ ପୂଜାକରି ତା'ପରେ ଖାଏ ।

ହାଣ୍ଡୁଆଣୀ ବୁଢ଼ୀ ସାନ ବୋହୂର ଏପରି କାର୍ଯ୍ୟ ଦେଖି ବୁଢ଼ାକୁ କହିଲା, ସାନବୋହୂ ମୋତେ ଅମାନିଆ କରୁଚି, ଏଠି ମୁଁ ତ ରହିବି ନାହିଁ । ବୁଢ଼ା କହିଲା ହଉ ରହ, ମୁଁ ସେ ଖଚଡ଼ ଝିଅକୁ ତଡ଼ି ଦଉଚି, ତା' ବାପଘରକୁ ଯାଉ । ଏହା କହି ଚଉଁ ଆରଦିନ ମାନଙ୍କୁ ଡାକି କହିଲା—ବୋହୂ ! ତମେ ମୋ କଥା ମାନିଲ ନାହିଁ, ଶାଶୁ କଥା ମାନୁନାହିଁ ଏଠି ରହି ପାରିବ ନାହିଁ । ମୁଁ କହିଲି— ଶାଶୁ କଥାମାନି ଚଳିବ, ମୋ କଥା ଏଡ଼ିଦେଲ । ତା କଥା ଏଡ଼ି ଚଳିଲ, ତୁମ୍ଭମାନ ଆଉ ଏ ଘରେ ଜାଗା ନାହିଁ । ତମେ ଏଠୁ ଚାଲିଯା । ତମ ଗେରସ୍ତ ଆସିବା ଯାଏ ବାପ ଘରେ ରହିଥା । ସେ ଆସିଲେ ନୂଆ ଘର କରି ତମକୁ ଆଣିବ । ଏହା କହି ବୁଢ଼ା ସାନ ବୋହୂକୁ ସେଇକ୍ଷଣି ଘରୁ ବିଦା କରିଦେଲା ।

ସେ'ତ ବୋହୂ ଭୂଆସୁଣୀ ଲୋକ । କୁଆଡ଼େ ବାଟ ଘାଟ ଦେଖିନ୍ତୁ ଯେ ବାପ ଘରକୁ ଯାଇ ପାରିବ । ଯାହାହେଉ କାନ୍ଦି କାନ୍ଦି ଯାଉଥାଏ । ଯାଉ୍ ଯାଉ ସଞ୍ଜ ହୋଇଗଲା, ତଥାପି ବାପଘର ମିଳିଲା ନାହିଁ । ନିଛାଟିଆ ବଣ ମଝିରେ ସଞ୍ଜ ହେବାରୁ ବୋହୂଟାର ଅତି ଭୟ ଓ କୋହ ଆସିଲା । ସେ ଗୋଟିଏ ହୁଡ଼ା ହାବୁଡ଼ ଉଢ଼ ସେଇଠି ବସି କୋଇ କୋଇ ହୋଇ କାନ୍ଦୁଥାଏ । ଏଇବେଳେ ଆଗରେ ଗୋଟିଏ ବଡ଼ ମାଟି ଫଟା ଦେଖାଗଲା । ପୁଣି ତା ମଧ୍ୟରୁ

ଗୋଟିଏ ପରମା ସୁନ୍ଦରୀ ସ୍ତ୍ରୀଲୋକ ବାହାରି ଆସି ବୋହୂକୁ ଧରି-ନେଇ କହିଲା ତୁ ମୋର ସଙ୍ଗରେ ଆ । ବୋହୂଟାର ଜୀବନ ମୂର୍ଚ୍ଛା ହୋଇଛି, ତା ସଙ୍ଗରେ ଆଗ ପଛ କିଛି ନ ଭାବି ଯାଇ ସେଇ ଫାଟରେ ପଶିଗଲା । ଫାଟଟା ପୁଣି ମୁନ୍ଦ ହୋଇଗଲା ।

ତେଣେ ସାନବୋହୂ ଯିନା ଘରେ ଥିବାରୁ ଲକ୍ଷ୍ମୀ ଥିଲେ । ଖୋଟି ତଳା ଦେଇ ବାନ୍ଧିକରି ପୂଜୁଥିଲା ଲକ୍ଷ୍ମୀ । ସ୍ତ୍ରୀକୁ ଯେମିତି ବୁଢ଼ା ତଡ଼ି ଦେଇଛି ମାଟିର ଝିଅ ଲକ୍ଷ୍ମୀ ମାଟି ଭିତରେ ଗୋପ୍ୟ ହେଲେ । ବୁଢ଼ାର ଘରି ପୁଅଙ୍କ ବୋଇତ ଦରିଆରେ ଝଡ଼ ପାଇ ବୁଡ଼ିଗଲା । ଗୋରୁ ଗାଈ ସୁଆଡ଼େ ଗଲେ ଅଇଲେ ନାହିଁ । ଯିଏ ଯାହା ନେଇଥିଲେ ଆଉ ଦେଲେ ନାହିଁ । ଧନ ଦୌଲତ ଉଭେଇ ଗଲା । ପୁଅମାନେ ଘରକୁ ଆସି ଦେଖିଲେ ବୁଢ଼ାକୁ ହାଟୁଆଣୀ ଯାହା କହୁଚି ବୁଢ଼ା ତାହା କରୁଛି । ତିନି ବୋହୂ ଅଛନ୍ତି, ସାନ ବୋହୂ ନାହିଁ । ସାନ ପୁଅ ଘଟଣା ଶୁଣି ଆଉ ଘରେ ରହିବ କ'ଣ, ଶ୍ୱଶୁର ଘରକୁ ଭାର୍ଯ୍ୟାକୁ ଖୋଜିବାକୁ ଗଲା । ସେ'ଠି ଯାଇ ଶୁଣିଲା ସିଏ ସେଠାକୁ ଯାଇ ନାହିଁ । କୁଳୀନ ଝିଅ କ'ଣ ବାପ ଘରକୁ ପଳାନ୍ତା ।

ସାନପୁଅ ବୋହୂକୁ ନ ପାଇ ବଡ଼ ଦୁଃଖିତ ହୋଇ ଚାରିଆଡ଼େ ଖୋଜି ବୁଲିଲା । ଇମିତି ବୁଲୁ ବୁଲୁ ପାଗଳ ପରି ଦେଖା ଯାଉ-ଥାଏ । ଦିନେ ବୁଲୁ ବୁଲୁ ଆସି ଦେଖିଲା ଗୋଟିଏ ଋଷୀ ବିଲରେ ହଳ କରୁଚି । ତାକୁ ଦେଖି ସାଧବ କହିଲା ଭାଇ ! ଲୋଟାଏ ପାଣି ମୋତେ ଆଣି ଦେବ । ମୁଁ ବରଂ ତୋ ହଳ ଜଗୁଛି, ଋଷୀଟି ଦେଖିଲା ପାଣି ନ ଦେଲେ ଲୋକଟାର ହଂସା ଉଡ଼ିଯିବ । ସେ କହିଲା, ଆଚ୍ଛା ତମେ ମୋ ହଳ ଜଗିଥାଅ ମୁଁ ପାଣି ଦେଇ ଆସେ । ଏହା କହି ସେ ତା ଘରକୁ ପାଣି ଆଣିବାକୁ ଗଲା ।

ଏଣେ ସାଧବ ପୁଅ ଭାବିଲା ବୃଷୀଟି କପରି ହଳ କରୁଥିଲା ମୁଁ ସେପରି ପାରେ କି ନାହିଁ ଦେଖିବା । ଏହା ଭାବି ସେ ଦୁଇ ଧେଣ୍ଡ ହଳ ବୁଲାଇଚି ଦେଖିଲା ଗୋଟାଏ ପଥରରେ ତା ଫାଳ ଲାଗି ଓଲଟି ଗଲା । ସେଇଠି ହଳ ଛାଡ଼ି କରି ପଥରଟା ଟେକି ଦେଖିଲା ବେଳକୁ ତା ଭିତରେ ଗୋଟାଏ ବାଟ ଅଛି । ସାଧବ ପୁଅ ସେଇ ଭିତରକୁ ମୁହଁ ବଢ଼େଇ ଦେଖିଲା ଖାଲି ଟଙ୍କା ସୁନା ଭର୍ତ୍ତି ହୋଇଛି । ସେଇଠୁ ପଥରଟା ଉଗାଡ଼ି ଦେଇ ଆସି ଠିଆ ହେଲା । ବୃଷୀଟି ପାଣି ନେଇ ଆସିବାରୁ ପାଣି ପିଇ କହିଲା ଭାଇ ! ସେ କିଆରୀରେ ମନ୍ଦ ରୋଗ ବସା କରିଛନ୍ତି । ତୁ ଆଜି ସେ କିଆରୀରେ ହଳ କର ନା । ମନ୍ଦରୋଗ ବରୁଡ଼ି ମାଡ଼ିବ ଯୋଉ ଜ୍ୱାଳା । ବୃଷୀଟି ଏକଥା ଶୁଣି ଆଜି ହଳ କରିବ କ'ଣ, ଲଙ୍ଗଳ ବଳଦ ନେଇ ପଳେଇଲା ଅନ୍ୟ ବିଲକୁ ।

ସାଧବ ପୁଅ ଏଣେ ତେଣେ ବୁଲା ବୁଲି କରି ସଞ୍ଜବେଳକୁ ଆସି ସେଇ ପଥରଟି ଟେକି ଯେତେ ଭିତରକୁ ପଶିଲା ସେତେ ଦେଖିଲା ଟଙ୍କା ସୁନା ସବୁ କୁଡ଼ା ହୋଇ ରହିଛି । ଏପରି ଦେଖି ସେ କିଛି ବାଟ ଆଗେଇ ଦେଖିଲା ଗୋଟିଏ ଗଜଦନ୍ତ ପଲଙ୍କରେ ଶୋଇଛି ତାହାର ସ୍ତ୍ରୀ । ସେ ସ୍ତ୍ରୀକି ଦେଖି ଡାକି ଉଠାଇଲା । ସ୍ୱାମୀ ସ୍ତ୍ରୀ ଦିହେଁ ଦୁହିଁଙ୍କୁ ଦେଖି ହସ କାନ୍ଦ ଭିତରେ ସୁଖ ଦୁଃଖ କୁହାକୁହି ହେଲେ ।

ଏମିତି କେତେଦିନ ଯିବାରୁ ଗେରସ୍ତ କହିଲା ହେ ! ମଣିଷ ହୋଇ ବିଲରେ ପଶି ରହିବା କେତେ କାଳ ? ତମେ ଲକ୍ଷ୍ମୀ ମା'ଙ୍କୁ କୁହ, ସେ ଆମକୁ ଦୟା କରନ୍ତୁ । ଆମେ ଉପରକୁ ଯିବା । ସେ ଦିନ ସାନ ବୋହୂ ଲକ୍ଷ୍ମୀ ପୂଜା କରିବାରୁ ଲକ୍ଷ୍ମୀ ପ୍ରସନ୍ନ ହୋଇ କହିଲେ ହଉ ଉପରକୁ ଯାଅ । ଯାହା ଦରକାର ଏଠାରୁ ଆସି ନେଇଯିବ । ହେଲେ ଯୋଉଦିନ ସେ ହାଟୁଆଣୀକି ଦେଖିବୁ

ସେଇଦିନ ତୁ ମରିବୁ । ବୁଢ଼ାକୁ ଦେଖିଲେ ତୋ ସ୍ୱାମୀ ମରିବେ । ଯିଏ ମଲେ ଏ ବଳ ବାଡ଼ ବୁଜ ହୋଇଯିବ । ଏହା କହି ଦେବୀ ଅନ୍ତର୍ଦ୍ଧାନ ହେଲେ । ସାନବୋହୂ ଆମି ଗେରସ୍ତକୁ କହିବାରୁ ସେ କହିଲା—

ମର୍ତ୍ତ୍ୟମଣ୍ଡଳେ ଦେହ ବହି
ଦେବତା ଜନ୍ମିଲେ ମରଇ,

ମରିବାକୁ ଡରିବା ଯିଦ୍ଦ କରିବା କାହିଁ ? ଏହା କହି ସେ ଟଙ୍କା ମୁନା ଆଣି ବଳବାଟେ ଆମି ବଳ ବାଲ୍‌କୁ କହିଲା, ଭାଇ ! ତୁ ଏ ଜମି ଖଣ୍ଡିକ ମୋତେ ବିକିଦେ । ଯାହା ମୂଲ୍ୟ ନବୁ ଦବାକୁ ମୁଁ ଆଗ ଅଛି । ଜମିବାଲା କହିଲା ଯେତେ ଗୁଣ ନବ, ଗୁଣକ ହିସାବ ଟଙ୍କା ହିସାବରେ ନେବ । ସାଧବ ପୁଅ କହିଲା, ନିଅ ନେ ବରଂ ପାଞ୍ଚଗୁଣ ଦେ ମୋତେ ।

ଜମି ପାଞ୍ଚଗୁଣ କବଲ୍ କରି ସେଇଥିରେ ଯିଏ କୋଠା ଖଣ୍ଡିଏ କରି ଚଳନ୍ତି । ଦିନେ ସାନବୋହୂ କହିଲା ହେ ! ଆମରତ ପିଲ-ପିଲି କିଛି ନାହିଁ । ହେଲେ ପୋଖରୀଟିଏ ଖୋଳାଇ ଯାଉନ୍ତେ । ନାଁ ରହନ୍ତା । ଗୋରୁ ମଇଁଷି ପାଣି ପିଅନ୍ତେ । ଗେରସ୍ତ କହିଲା ହଉ କର । ସତ୍‌କାର୍ଯ୍ୟ କରିବାକୁ ଖଳ ପ୍ରପଞ୍ଚ ଯିନା ବଗାଡ଼ନ୍ତି । କିଏ ବା ମନା କରିବ କାହିଁକି । ସେଇଠୁ ପାଖରେ ଜମି ଖଣ୍ଡେ କିଣି ପୋଖରୀଟିଏ ଖୋଳାଇଲେ । ସାନବୋହୂ ଦେଖିଲା ଏ କାମ୍ଭାର କାଳ ଯାହା ହୋଇଚି, ଏଥିରେ ଜମିଦାର ଖାଲି ଦରକାରି କହି ଶୋଷି ନଉଚି; ପୋଷି ହବାକୁ ଦଉଚି କାହିଁ ? ଏଇବେଳେ ପୋଖରୀଟା ଖୋଳିଦେଲେ ଗୁଡ଼ିଏ ଲୋକ ବଞ୍ଚିଯିବେ । ଏହାଭାବି ଶୁଭଦିନ ଦେଖି କାର୍ଯ୍ୟ ଆରମ୍ଭ କଲା । ଠିକ୍ କଲା, ଯିଏ ଶହେ ମାଟି କାଟିବ ଶହେ ପାହି ପାଇବ । ଏକ ଲଗାଏ ତ କାମ ହେ କରିବ ପୋଖରୀ ପ୍ରତିଷ୍ଠା ହେଲେ ହି' ବଖତ ମନ ଲକ୍ଷ୍ମୀରେ ଖାଇ

ଯୋଡ଼ିଏ ଲୁଗା ନେଇ ବିଦା ହେବ । ଏପରି ଘୋଷଣା ଶୁଣି ବହୁତ ଜାଗାରୁ ଲୋକେ ଆସି ଯୁଟିଗଲେ । କି ବ୍ରାହ୍ମଣ କି ଶୂଦ୍ର ସବୁ ଯାଇ ମାଟି କାଟିଲେ ।

ଏଣେ ତ ସାଧବ ଘରୁ ସବୁ ସରି ଯିବାରୁ ଦରିଦ୍ର ହୋଇ ଖାଇବାକୁ ପାଇଲେ ନାହିଁ । ବୁଢ଼ା ତିନି ପୁଅଙ୍କୁ କହିଲା, ଆଉ ତ ଏମିତି ହୋଇ ସାହିରେ ରହି ହଉନ । ରାତାରାତି କୁଆଡ଼େ ପଳେଇ ଚାଲ । ଲୋଏ ଦେଖିଲେ ସତରେ ବୁଢ଼ା ଯାହା କହୁଛି ସତ । ଶାସ୍ତ୍ର କହୁଛି—

"ବରଂ ବନ, ବ୍ୟାଘ୍ର ଗଜେନ୍ଦ୍ର ସେବିତଂ
ଦ୍ରୁମାଳୟଃ ପକ୍ୱଫଳଂ ବଭୋଜନଂ ।
ତୃଣାନି ଶଯ୍ୟା ପରିଧାନ ବଲ୍‌କଳଂ
ନ ବନ୍ଧୁ ମଧ୍ୟେ ଧନହୀନ ଜୀବନମ୍ ।"

ବରଂ ବଣକୁ ଯାଇ ଗଛରେ ରହି ଫଳମୂଳ ଖାଇବ ଓ ବଣ ତୃଣ ଶଯ୍ୟାରେ ଶୋଇ ବଞ୍ଚିବ; ନତୁବା ହାତୀ ବାଘ ମୁହଁରେ ପଡ଼ି ମରିବ, ତଥାପି ଦରିଦ୍ର ହୋଇ ବନ୍ଧୁଜନଙ୍କ ମଧ୍ୟରେ ରହିବ ନାହିଁ । ଏହା ଭାବି ପୁଅମାନେ ନିଜର ବାସନ, ଲୁଗା ବନ୍ଧାବନ୍ଧି କରି ଭାର୍ଯ୍ୟାଘେନ ରାତାରାତି ବାହାରିଗଲେ । ବୁଢ଼ା ତା ହାଠୁଆଣୀ ଭାର୍ଯ୍ୟା ବୁଢ଼ୀକି ନେଇ ପଛେ ପଛେ ଗଲା ।

ଏମାନେ କେତେଦୂର ଯିବାରୁ ରାତି ପାହିଲା । ସେଇଠି ଗୋଟିଏ ଧର୍ମଶାଳା ଦେଖି ରହିଲେ । ଯାହା ନେଇଥିଲେ ଦି' ଦିନକୁ ଅଣ୍ଟିଲା ନାହିଁ । ତାପରେ କ'ଣ କରିବା ଭାବି ହଉଚନ୍ତି, ଏଇବେଳେ ଦଳେ ଲୋକ କୋଡ଼ି ପାଚୁଆ ନେଇ ଯାଉଥିବାର ଦେଖି ବଡ଼ପୁଅ ପଚାରି ବୁଝିଲା ଜଣେ ଦୟାଶୀଳା ଧନୀର ସ୍ତ୍ରୀ ପୋଖରୀ ଖୋଳେଇ, ନାହିଁ ନଥିବା ମଜୁରୀ ଦଉଚି । କାନ୍ତାର ଯୁଗପାଇଁ ମାଟି ବୋଝକୁ ପାହେ କରି ଦଉଚି । ସେଇଠୁ ଆସି ସେ ଆଉ ଭାଇଙ୍କୁ କହିବାରୁ ସେଦିନ

ତନଭାଇ ଓ ପୁରୁଷଙ୍କୁ ନେଇ ମାଟି ବୋହି ଗ୍ଭଲିଗଲେ । ଆଣିଲେ ।
ହେଲେ ଗୁଡ଼ାକେ କୁଟୁମ୍ବଙ୍କୁ ଗ୍ଭଲିଗଲା' ଘଣ୍ଟାକୁ ନଅଣ୍ଟ । ତହିଁ
ଆରଦିନକୁ ବତ୍ସର ହେଲା ତିନି ବୋହୂ ଦ୍ୱ ଗ୍ଭଲନ୍ତୁ, ମାଟି ବୋହିବେ,
ପେଟ ପୋଷ ନାହିଁ ଦୋଷ । ଖର୍ତ କ'ଣ ? ବୋହୂ ଏ ଦ ନରୁପାୟ
ଦେଖି ମର୍କି ଗଲେ । ବୁଢ଼ା ବୁଢ଼ୀଙ୍କ ଉପରେ ପିଲା ଛୁଆ ସମ୍ଭାଳିବା
କାର୍ଯ୍ୟ ରହିଲା ।

ମଝିଆଁ ପୁଅର ପିଲା ଗୁଡ଼ାକ ବଡ଼ ଦୁଷ୍ଟ, ସବୁବେଳେ
ଖାଇବୁ ଖାଇବୁ ହୁଅନ୍ତି । ଡେରି ହେଲେ ବୁଢ଼ା ବୁଢ଼ୀଙ୍କୁ ବାଡ଼େଇ
ଥଣ୍ଡା କରି ଦିଅନ୍ତି । ସଞ୍ଜବେଳକୁ ପୁଅ ବୋହୂମାନେ ଆସି କହନ୍ତି
ସେଇ ଯୋଉ ମହାଜନ ଆଉ ଚାଷୀ ସେମାନେ ବଡ଼ ଦୟାଳୁ ।
ନ ହେଲେ ଏ ଯେଉଁ ମରୁଡ଼ି ଯୁଗ ପଡ଼ିଚି ସେଥିରେ ଲୋକେ ବିକ
କଣି ବଡ଼ଲୋକ ହଉଚନ୍ତି । ସିଏ ଘରେ ଥିବା ସଞ୍ଚିଲା ଧନକୁ
ବାହାର ଦେଇ ପୋଖରୀ କାଟୁନେନା । ଏମିତି କୁହାକୁହି ହଉଥିଲେ ।
ତହିଁ ଆରଦିନ ଏମାନେ ଯେମିତି ଖାଇପିଇ କାମ କରିବାକୁ ଗଲେ;
ମୋ ମା'କୁ କାହିଁ ଘଟେଇଲୁ କହି ଗୋଟାଏ ନାତି ବୁଢ଼ୀ ପିଠିରେ
ହ' ଗ୍ଭରି ବଧା କସି ଦେଲା । ବୁଢ଼ୀ ତା କାନ ମୋଡ଼ି ଦେବାରୁ ସେ
ଭେଁ ଭେଁ ହୋଇ କାନ୍ଦିଲା । ଆଉ ପିଲାଏ ମିଳି ତାକୁ ମା' ପାଖକୁ
ନେଇଗଲେ । ମା' କାମ ଛାଡ଼ି ବୁଢ଼ା ଉପରେ ବଗିଡ଼ି କହିଲା
ଆମେ ସାରଦିନ ଖଟିଆଣି ପୋଷିବୁ, ମୋର ତମେ ପିଲା କେତୋଟିଙ୍କୁ
ସମ୍ଭାଳି ପାରିବ ନାହିଁ । ବୁଢ଼ୀ କହିଲା ଆଉ କ'ଣ ବୟସ ଆସୁଚି
ଯେ ପିଲାଧରି ବୋହି ପାରିବ । ବୁଢ଼ା କହିଲା ଅକୁଳିଆ ଝିଅଙ୍କୁ
ଏତେକାଳ ପୋଷିଲି, ଇଏ କେଇଟା ଦିନରେ ଏତେକଥା, ଆଚ୍ଛା
ହଉ । ଏହାକହି ବୁଢ଼ା ବାଡ଼ିଟିଏ ଧରି ନଇଁ ନଇଁ ଯାଇ ମଜୁରୀଆଙ୍କୁ
ପଗ୍ଭରିଲା ବାପା ! ଯେଉଁ ଧର୍ମୀ ଲୋକ ପୋଖରୀ ଖୋଳଉଚି ସେ
କେଉଁଠି ଅଛୁ ? ଲୋକମାନେ ବୁଢ଼ାକୁ କହିଲେ ହେଇଟି ବାବୁ

ବସି ହିସାବ କରି ଟଙ୍କା ଦଉଛନ୍ତି । ତାଙ୍କ ପାଖରେ ଟଙ୍କା ଗାଦି ରହିଛି । ସେଇଠୁ ବୁଢ଼ା ଗୋଟିଏ ଗୋଟିଏ ଯାଇ ଭୂର୍ଲତାରେ ଗୋଟିଏ ହାତ ରଖି ଝଣ୍ଡେ ଦୂରରୁ ଅନେଇଲା, ବୁଢ଼ାକୁ ଘୁଞ୍ଚିବାର ଦେଖି ସାନ ପୁଅ ଦୂରରୁ ଚିହ୍ନି ଡାକିଲା ବାପା ! ବାପ୍ ସେତିକି । ସେଇଠୁ ପୁଅ ଢଳି ପଡ଼ିଲା, ପିଣ୍ଡରେ ପ୍ରାଣ ନାହିଁ ଆଉ ।

ଖବର ପାଇ ବୋହୂ ଆସି ସ୍ୱାମୀ ଗୋଡ଼ତଳେ ମୁଣ୍ଡ କୋଡ଼ି ହୋଇ ବାହୁନି ବାହୁନି ଲକ୍ଷ୍ମୀଙ୍କ ବର ଦେବା କଥା କହୁଥାଏ । ଏଇବେଳେ ହାଟୁଆଣୀ ବୁଢ଼ୀ ବି ବୁଢ଼ାକୁ ଖୋଜି ଖୋଜି ଆସି ପହଞ୍ଚିଲା । ତା ଉପରେ ଯେମିତି ସାନ ବୋହୂର ଦୃଷ୍ଟି ପଡ଼ିଚି ସିଏ ବି ସେଇଠି ଢଳି ପଡ଼ିଲା । ଏ ଦୁଇ ଜଣଙ୍କର ମରଣ ଦେଖି ଯୋଉ ଲୋକ କାମ କରୁଥିଲେ ସେମାନେ ରାଗି ଆସି ସ୍ତ୍ରୀଙ୍କର ଲାଗି ଆମ ମାଲିକ ମଲେରେ କହି ବୁଢ଼ାବୁଢ଼ୀଙ୍କି ଧରିନେଇ ବାନ୍ଧି ପକେଇଲେ । କେତେକ ଆସି ବାଧା ଖୁଣ୍ଟପୁଡ଼ା ଏପରି ଚଢ଼େଇ ଦେଲେ ଯେ ସେଇ ବନ୍ଧନ ଅବସ୍ଥାରେ ବୁଢ଼ା ବୁଢ଼ୀ ମରିଛନ୍ତି । କହିଲୁ ଅବୋଲକରା ତୁ ଯୋଉ ଖୁରୋଟି ମୁଦ୍ଧାର ଓ ଟଙ୍କା କେତେ ଦେଖି ଆସିଲୁ ସିଏ ହଉଚି ଏଇ ଘଟଣା, ଏହାକହି ଗୋସେଇଁ ଭୋଜନ ପାଇଁ ଯୋଗାଡ଼ କଲେ । ଏ ଗପଟି କୃଷ୍ଣ ବେହେରାଙ୍କଠାରୁ ମୁଁ ଶୁଣିଥିଲି ।



## ଶ୍ମଶାନରେ ହାଡ଼ ପାହାଡ଼ କଥା

ତହିଁ ଆରଦିନ ଅବୋଲକର ଗୋସେଇଁ ସଙ୍ଗେ କିଛୁ ବାଟ ଗଲାପରେ ଗୋଟିଏ ପାହାଡ଼ିଆ ଜାଗା ପଡ଼ିଲା । ସେଠି କାଁ ଭାଁ କୋଉଠି ଗୋଟିଏ ଯୋଡ଼ିଏ ଘର ବି ଅଛି । ଗୋସେଇଁ କହିଲେ ଅବୋଲକରା ! ଏହା ତ ପାହାଡ଼ିଆ ଜାଗା । ବୁଝି ବିଚାରି ଯିବା ଉଚିତ । ଆଜି ଏଇଠା ରହି କାଲି ସାହାରେ ରହିଯିବା । ତୁ ଆଖ ପାଖରେ କୋଉଠୁ ଚୂଡ଼ା ସନ୍ଦ ପାଉ କିଣି ଆଣିବୁ ଯା । ଟଙ୍କାଟିଏ ନେଇ ଯା । ଅବୋଲକରା ଗଣ୍ଠିଲି ରଖି ଟଙ୍କା ଧରି ଗଲା । କିଛି ସମୟ ପରେ ଫେରିଲା କଦଳୀ ଦି'ଫେଣା ଆଣି ଥୋଇ ଦେଇ କହିଲା ଗୋସେଇଁ କଦଳୀ ଖାଉଥାଅ, ମୁଁ ଯାଉଛି । ଗୋସେଇଁ ପଚାରିଲେ ପୁଣି କ'ଣ ଦେଖିଲୁ କିରେ ? ଅବୋଲକରା କହିଲା ମୁଁ ଚୂଡ଼ା ପାଇଁ ଯାଇ ଚୂଡ଼ା ନ ପାଇ କଦଳୀ କିଣି ଆସିଲା ବେଳେ ଦେଖିଲି ଗୋଟାଏ ମଶାଣିରେ ହାଡ଼ରେ ଗୋଟାଏ ପାହାଡ଼ ହୋଇ ରହିଛି । ଲୋକଙ୍କୁ ପଚାରିବାରୁ ସେମାନେ କହିଲେ, ଆମେ କହି ପାରିବୁ ନାହିଁ । ତା'ର କାରଣ ନ କହିଲେ ମୁଁ ତ ରହିବି ନାହିଁ ଆଉ ।

ଗୋସେଇଁ ଭାବିଲେ ବେହିପୋ ମୂର୍ଖଟାକୁ ଆଣି ତ ବଡ଼ ବିପଦ ହେଲା । ଦଶଟା ମାଇକିନାଙ୍କୁ ବୁଝେଇ ହେବ, ଗୋଟିଏ ମୂର୍ଖକୁ ବୁଝେଇବା କଷ୍ଟ । ହଉ କ'ଣ କରିବା, ଆଣିଛି ଯେତେବେଳେ—

ଭଣ୍ଡାରୀ ହାତରେ ପଡ଼ିଛି ଚୁଟି
ଯେଣିକି ବୋଇଲେ ସେଣିକି ଉଠି ।

କହିଲେ ହଉରେ—

"ଏକା କମ୍ବଳ ରଅଙ୍ଗ ଛତା
ଶୁଣ ଅବୋଲକରା ସେ କଥା ।"

ଏ ଦେଶର ନାମ ମୁକୁନ୍ଦପୁର, ଏଠାରେ ଜଣେ ରାଜାପୁଅ ପାରିଧିକି ଆସି ବନ ଦେବୀଙ୍କ କରୁଣାରୁ ଗୋଟିଏ କିନ୍ନରୀ ସୁନ୍ଦରୀକି ପାଇଥିଲେ । ସେଠାରୁ ସେ ରାଜପୁଅ ସେ ବନ ଦେବୀଙ୍କ ପାଇଁ ମନ୍ଦିର କରିଦେଇ ପୂଜାବିଧିର ସୁବିଧା କରି ଦେଇଥିଲେ । ବନ ଦେବୀଙ୍କ ନା ମଣ୍ଡଳେଶ୍ୱରୀ । ଭକ୍ତି କରି ଦେବୀଙ୍କୁ ଡାକିଲେ କଥା କହନ୍ତି । ତାଙ୍କ ପୂଜାବିଧି ପାଇଁ ରଜା ଗୋଟିଏ ଭୂମିଜକୁ ନିଯୁକ୍ତ କରିଥିଲେ । ସେ ଭୂମିଜଟି ଦେବୀଙ୍କୁ ଅତି ନିୟମରେ ପୂଜାକରି ବୟସ ହବାରୁ ମରିଗଲା ।

ତାର ଗୋଟିଏ ପୁଅ । ତାକୁ ଓଲା ବୋଲି ସମସ୍ତେ ଡାକନ୍ତି । ଲୋକଟା ମାଇଚିଆ ଧରଣର । ମାଇପିଙ୍କ ପରି ଗୁଳି, ଚୋଲି, ରଙ୍ଗ, ଢଙ୍ଗ ସବୁ ତାର । ହେଲେ ଦେବୀଙ୍କ ପ୍ରତି ଅଚଳ ଭକ୍ତି । ସେଦିନ ପୂଜା କରିବାକୁ ଯାଇ ବର୍ଷା ହବାରୁ ରାତିରେ ସେହି ଜାଗାରେ ରହିଗଲା । ପାହାଡ଼ିଆ ଜାଗା, ବାଘ ଭାଲୁଙ୍କ ଉପଦ୍ରବ ହେତୁ ମନ୍ଦିରରେ ଶୋଇଥାଏ । ଦେବୀଙ୍କ ପାଖକୁ ଗନ୍ଧର୍ବ ଦେଶରୁ କିନ୍ନରୀମାନେ ଦର୍ଶନ ପାଇଁ ଆସନ୍ତି । କାହାରି ମନଲାଖି ବର ପାଇଁ ଆସିବାକୁ ପଡ଼େ । ସେଦିନ ରାତି ଅଧବେଳକୁ ଦଶଟି କିନ୍ନରୀ ଗୋରୀ ଗୋଟିଏ ଧଳା ହାତୀରେ ଚଢ଼ି, ଆସି ମଣ୍ଡଳେଶ୍ୱରୀଙ୍କ ମନ୍ଦିର ପାଖ ପାହାଡ଼ରେ ଓହ୍ଲାଇଲେ । ତା'ପରେ ହାତୀଟାକୁ ସେଇଠି ଛାଡ଼ି ମନ୍ଦିରକୁ ଯାଇ ଦେଖିଲେ ଲୋକ ଗୋଟିଏ ମୋଡ଼ ମାଡ଼ି ହୋଇ ଶୋଇଛି । ତାକୁ ଦେଖି କିଏ କହିଲା ଯେମିତି ଗୋଟିଏ ମଣିଷ କିଏ ଜଗିଲାଣି । ଆଉ ଜଣେ କହିଲା ଗୋଟିଏ ଲୋକ ଆମ ଦଶଜଣଙ୍କୁ କ'ଣ କରିବ ? ଆଉ ଜଣେ କହିଲା ସେ'ଟା ପୁଣି ମାଇକିନିଆ । ଆଉ ଜଣେ କହିଲା ନାଇଁ ମାଇଚିଆଟେ । ଏମିତି କୁହାକୁହି ହୋଇ ସେମାନେ ମଣ୍ଡଳେଶ୍ୱରୀଙ୍କୁ ପୂଜା ଆରାଧନା କଲେ ।

ଏଣେତ ଓଲା ଭୂମିକଟି ଆଖି ମିଟି ମିଟି କରି ପଡ଼ିଥାଏ । ଏମାନେ ଯେମିତ କାମରେ ବ୍ୟସ୍ତ ହେଲେ ସେ ଭାବିଲା ଏମିତି ସୁନ୍ଦରୀ ଯୁବତୀତ ଆମ ଦେଶରେ ନାହାନ୍ତି । ବଡ଼ ବଡ଼ିଆ ମାଇକିନା କୁଆଡ଼ୁ କେମିତି ଆସିଲେ । ୟା ଭାବି ସେ କେମିତି ଆସିଲେ ଦେଖିବାକୁ ମନ୍ଦିରରୁ ବାହାରି ଆସି ଦେଖିଲା ବେଳକୁ ମସ୍ତବଡ଼ ଧଳା ହାତୀଟିଏ ବରଡାଳ ଖାଉଛି, ତା' ଉପରେ ପଲାଣ ହାଉଦା ପଡ଼ିଚି ସବୁ । ସେଇଠୁ ଓଲାଟା ଗୋଟାଏ ଜାଗାରେ ଲୁଚି ରହିଲା ।

ମା'ଝିଅ ଦେଉଳରେ ପଶନ୍ତି, ସେଥି-ଶୁଭ ଯେଝା ମନାସନ୍ତି, ଝିଅ ଗୁଡ଼ାକ ଦେବୀଙ୍କୁ ମନକ ଇଚ୍ଛାବର ମାଗୁଥାନ୍ତି । ଓଲାଟା ଶୁଣି ଶୁଣି ଭାବୁଥାଏ ଏଗୁଡ଼ାକ ପ୍ରମିଳା ଦେଶରୁ ଆସିଛନ୍ତି କି ? ଏହିବେଳେ କିନ୍ନରୀଏ ପୂଜାସାରି ବ୍ରତ ଶେଷ ହେଉଚି ଦେଖି ହାତୀ ଉପରେ ବସି କହିଲେ, ଚାଲରେ ହାତୀ ଚାଲ । ହାତୀଟାତ ଜଗି ବସିଥିଲା, ହାତୀ ଉଠିବାର ଦେଖି ତା ଲାଞ୍ଜଟାକୁ ଧରି ଟାଣି ରଖିବ ଭାବି ଧରିଲା ବେଳକୁ ହାତୀ ଉଠି ଛୁ । ଓଲାଟା ସେମିତି ଲାଞ୍ଜୁରେ ଝୁଲୁଚି । ହାତୀଟା ହଜାର ହଜାର ହାତ ଉଚ୍ଚକୁ ଉଠି ଯାଉଛି । କନଖଳ, ସାଳୋରା, ସୁବନଶ୍ରୀ, ଶତୋଦ୍ରୁ—ଇମିତି ହୋଇ ଯାଇ ଚନ୍ଦନରେ ଗନ୍ଧର୍ବ କନ୍ୟାଙ୍କୁ ଛାଡ଼ିଦେଲା । ଗଲାବେଳେ ଓଲାଟା ପଡ଼ିଯିବା ଭୟରେ ହାତୀ ଲାଞ୍ଜ ଯାବୁଡ଼ି ଧରିଥାଏ । ସେଠି ହାତୀ ଆଣ୍ଠେଇ ପଡ଼ିବାରୁ ଏ ମୁଠା ଛାଡ଼ିଦେଇ ଠିଆହେଲା ।

କିନ୍ନର କନ୍ୟାମାନେ ହାତୀରୁ ଓହ୍ଲାଇ ଦେଖିଲେ ସେଇ ମନ୍ଦିରରୁ ଲୋକଟା ଏଠିକି ଚାଲି ଆସିଛି । ସେଇଠୁ ଜଏ କହିଲା ଆଲୋ, ସେଇ ହେଙ୍ଗେଡ଼ାଟା ଆସିଚି ଲୋ । କିଏ କହିଲା ଆଲୋ, ମହୁଆଟାକୁ ଦେଖିବୁ ଆସ । ଏମିତି କହି ସମସ୍ତେ ବହେ ହସିଲେ

ଆଗେ । ତାପରେ ପାଖକୁ ଡାକି କମିତି ଆସିଲୁ ତାକୁ ପଚାରିବାରୁ ଇଏ କହିଲା ମୁଁ ତୁମ ହାତି ଲାଞ୍ଜ ଧରି ଆସିଚି । ସେଇଠୁ କନ୍ୟା କହିଲେ, ହଉ ମାଇଚଆଟା ଆଇଲାଣି ଯେବେ ତାକୁ ଆମ ଦେଶ ବୁଲେଇ ଦେଖେଇ ଦିଅ । ପୁଣି ରାତିକି ସେମିତି ହାତି ଲାଞ୍ଜ ଧରେଇ ନେଇଯିବା । ଏହା ବଦଳରେ ଝିଅଗୁଡ଼ାକ ତାକୁ ନେଇ ସବୁ ଜାଗାରେ ବୁଲେଇ ଦେଖେଇ ଦେଲେ । ରାତିକି ଆସିଲା ବେଳକୁ ଓଲାଟା ଗୋଟାଏ ଆପେଲ ଜାମ୍ବୁ ଫଳ ନେଇ ଆସିଲା ଗାଁ ବାଲାଙ୍କୁ ଦେଖେଇବା ଲାଗି ।

ରାତିରେ କନ୍ୟାରୀଏ ହାତି ଲାଞ୍ଜରେ ତାକୁ ଲଟକାଇ ଓହ୍ଲାଇ ଆସି ମନ୍ଦିର ପାଖରେ ଛାଡ଼ିଦେଲେ । ସକାଳ ହବାରୁ ଓଲା ଭୁମିଜ ଗାଁକୁ ଆସିଲା । ଦ'ଦିନ ଓଲା ଓ ଆସିବାରୁ ତା ଘର ଗାଁ ଲୋକ ଚାରିଆଡ଼େ ଖୋଜୁଥିଲେ । ଓଲା ଆସିବାରୁ ପଚାରିଲେ ଆରେ ଦୁଇଦିନ ହେଲା ତୁ କୁଆଡ଼େ ଥିଲୁ ? ଓଲା କହିଲା ମୁଁ ସ୍ୱର୍ଗକୁ ଯାଇଥିଲି । ତାର ପ୍ରମାଣ ଏଇ ଦେଖ । ଯୁ କହି ସେ ଫଳଟିକୁ ଦେଖେଇ ସବୁ ଯିବା ଆସିବାର ପ୍ରଣାଳୀ କହିବାରୁ ଗାଁ ଲୋକେ ଚରଚେ ଗଲେ । ଓଲା ଲୋକ ସ୍ୱର୍ଗ ବୁଲି ଆସିଚି, ଚାରିଆଡ଼େ ଖବର ବାହାରି ଗଲା । ବହୁତ ଲୋକ ସ୍ୱର୍ଗ ଫେରନ୍ତା ଓଲାକୁ ଦେଖିବାକୁ ଆସିଲେ ।

କିଏ କେତେ କଥା ପଚାରିଲେ । କ'ଣ ଖାଇଲା କେହି ପଚାରିଲେ, ଓଲା ଯାହା ଖାଇଛି ଦେଖିଛି ସବୁ କହିଲା । ତା କଥା ଶୁଣି ଶୁଣି କେତେ ଜଣ ଆସି ତାକୁ ଅନୁରୋଧ କଲେ ଭାଇ ! ତୁ ଟିକିଏ ଦୟା କଲେ ମୁଁ ଯାଇ ସ୍ୱର୍ଗଟା କମିତି ଦେଖି ଆସନ୍ତି । ଇମିତି ପ୍ରତି ଲୋକ ଆସି ଓଲାକୁ କହିଲେ । ଓଲାଟା କାହାକୁ ମନା କରିବ । ସମସ୍ତେ ତ ସାଇପଡ଼ିଶାର ଲୋକ । କାହାକୁ ଶତ୍ରୁ ମିତ୍ର କରନ୍ତା ସିଏ । ସମସ୍ତଙ୍କୁ କହିଲା ଆଚ୍ଛା ନେଇଯିବା ।

ଝିଲା ତହିଁ ଆରଦିନ ସବୁ ଲୋକଙ୍କୁ ଡାକି କହିଲା, ତମର ଯାହାର ଯେମିତି ଦେଣା ପାଉଣା ଅଛି ସବୁ ମେଣ୍ଟାଇ ଦିଅ । ଆଜିଠୁ ଆଠଦିନ ବାଦେ ସମସ୍ତଙ୍କୁ ନେଇ ମୁଁ ସ୍ୱର୍ଗାରୋହଣ କରେଇ ଦେବି । ଏ କଥା ଶୁଣି ପଞ୍ଚଖଣ୍ଡି ଗାଁର ଲୋକ ସ୍ୱର୍ଗକୁ ଯିବା ପାଇଁ ତୟାର ହୋଇ ରହିଲେ । ଏଣେ ଓଲାଟା ନିଜ ଘରେ ପନ୍ଦର ଦିନ ଚଳିବା ଭଳି ଚୁଡ଼ି ଲୋକଙ୍କଠୁ ଦି' ଟଙ୍କା କରି ଆଣି ମାଆ ବୁଢ଼ୀ ପାଖରେ ଜମା କଲା ବେଳକୁ ଟଙ୍କାରେ ତାର ଗୋଟିଏ ଘଡ଼ି ଭର୍ତ୍ତି ହୋଇଗଲା । ତା' ପରେ ଯାତ୍ରାବାର ଦିନ ସମସ୍ତଙ୍କୁ କଣ୍ଠ କଲା । ସବୁ ଲୋକ ଯାଇ ଓଲା ପଛରେ ଦେବଗିରି ଆଡ଼କୁ ଆଗେଇଲେ । ଓଲା ଆଗରେ ଯାଇ ସମସ୍ତଙ୍କୁ ଜଣା ଜଣା କରି କହିଲା, ପଛକୁ ପଛ ଯିଏ ଯେମିତି ଅଛ ସେମିତି ରହି ଆଗ ବାଲାର କମରକୁ ଯାବୁଡ଼ି ଧରିଥିବ । କେହି ଛାଡ଼ିବ ନାହିଁଟି, ଛାଡ଼ିଦେଲେ ପଡ଼ି ମରିବ ।

ସମସ୍ତେ ସେମିତି କରିବେ ସ୍ୱୀକାର କରିବାରୁ ଓଲା ତା ପଛ ବାଲାକୁ କହିଲା, ତୁ ମୋ କମରକୁ ଧରିଥିବୁ । ମୁଁ ହାତୀ ଲାଞ୍ଜକୁ ଧରିଥିବି, ହସ ଖୁସିରେ ଯାଇ ଘଣ୍ଟାକରେ ସ୍ୱର୍ଗରେ ପହଞ୍ଚିବା । ସେଠି ପହଞ୍ଚିଲେ ମଜା । କେତେ ରକମର ଚିଜ ଖାଇବା, ଦେଖିବା ଘର ସଂସାର କଥା ଆଉ କ'ଣ ମନେ ରହିବ ? ଇମିତି କହି ସମସ୍ତଙ୍କୁ ନେଇ ମଣ୍ଡଳେଶ୍ୱରୀ ପାଖରେ, ପହଞ୍ଚିଲାବେଳକୁ ଅନେକ ରାତି ହୋଇ ଗଲାଣି, ଏଇବେଳେ ଘଣ୍ଟା ଠଣ୍ ଠଣ୍ ବଜାଇ ଧଳା ହାତୀଟା ଖପ୍ କରି ମନ୍ଦିର ପାଖରେ ଓହ୍ଲାଇଲା । ହାତୀ ଲଟେଇ-ବାରୁ ଝିଅ ଦଶଟା ମଣ୍ଡଳେଶ୍ୱରୀ ମନ୍ଦିରରେ ପଶିଗଲେ । ହାତୀ ସେଇଠି ଝୁଲୁଥାଏ ।

ଝିଅଗୁଡ଼ାକ ମଣ୍ଡଳେଶ୍ୱରୀଙ୍କୁ ବର ମାଗୁଥାନ୍ତି । ଦେବୀ କହୁଥାନ୍ତି ହେବ କୁଆଡ଼ୁ ? ଅବକାଠ ବର ଗୁଡ଼ାକ ବର୍ବର ହେବାକୁ ବସିଲେଣି । ନିଜକୁ ପୋଡିବା କଷ୍ଟ, ବାହା ହେଉଛୁ କଏ ?

ହାତ୍ତ ଖସିବାରୁ ଓଲା ଉପରୁ କହିଲା ହେଇ ହୋଇଯିଆର ଚମ୍ପୁର । ତା କଥା ଶୁଣି ସମସ୍ତ ଲୁଗା ଭଡ଼ ଧାଡ଼ ହୋଇ ରହିଁ ରହିଲେ ! ଏଇବେଳେ ଝିଅ ଦଶଟା ହସ କୁରୁଳ ପକେଇ ଆସି ହାତୀକୁ କହିଲେ ଲଚ୍ । ହାତୀ ବୋଲମାନ ଆଣେଇବାରୁ ଝିଅ-ମାନେ ତା ଉପରେ ଚଢି କହିଲେ ଚଲ । ହାତୀ ଉପର ମୁଖା ହବାରୁ ଓଲା ତା ଲାଙ୍ଗୁଡ଼କୁ ଯାବୁଡ଼ ଧରି ଓହଳିଲା । ତା କମରକୁ ପଛକୁ ପଛ ସବୁ ଲୋକ ଅଣ୍ଟା ଧରି ଓହଳିଲେ । ହାତୀଟା ଶୂନ୍ୟ ମାର୍ଗରେ ସମସ୍ତଙ୍କୁ ନେଇ ଯାଉଥାଏ ।

ଏମିତି କରି ଦଶ ଯୋଜନ ବାଟ ମାଟି ଛୁଡ଼ ଯିବାରୁ ଓଲାକୁ ଯୋଉ ଲୋକ ଧରିଥିଲା ସେ ପଚାରିଲା ଆରେ ଭାଇ ! ତୁ ତ ସ୍ୱର୍ଗରେ ଯାହା ଖାଇଥିଲୁ ସବୁ କହିଲୁ ସେଠାକାର ଲଡ଼ୁ କୁ ରକମ ତ କହିଲୁ ନାହିଁ । ସେଇଠୁ ଓଲା ଦ' ହାତରେ ଦେଖାଇ ଦେଲା ଏ, ହେ ଟୋକେଇ ପରିକା ସରଗ ଲଡ଼ୁ ଖାଇଚ ବୋଲି । ସେ ଯେମିତି ଲଡ଼ୁର ଆକାର ଦେଖାଇଚ ହାତ ଛୁଡ଼ଗଲା ଲାଙ୍ଗୁଡ଼ରୁ ଦୁଇ ହାତ ସେ ଛୁଡ଼ ଦେଇଛୁ ଯେମିତ, ସେମିତି ହାତୀ ଗଲା । ଶୂନ୍ୟ ମାର୍ଗରୁ ସବୁ ଲୋକ ଖସି ଗୋଟାଏ ଉପରେ ଗୋଟାଏ ପଡ଼ି ସେଇଠି ମରିଛନ୍ତି ସବୁଯାକ । ତାଙ୍କର ହାଡ଼ ସବୁ ପାହାଡ଼ ପରି ସେଇ ଜାଗାରେ ପଡ଼ି ରହିଛି । ବୁଝିଲୁରେ ଅବୋଲକରା । ତୁ ଯେଉଁ ହାଡ଼ ପାହାଡ଼ ଦେଖିଲୁ ସେଇଟା ସେହି ଲୋକମାନଙ୍କର ଗୋଡ଼ ପଡ଼ିଛି ।

"ଅଜ୍ଞଃ ସୁଖମାରାଧ୍ୟଃ ସୁଖତରମାରାଧ୍ୟତେ ବିଶେଷଜ୍ଞଃ
ଜ୍ଞାନଲବ ଦୁର୍ବିଦଗ୍ଧଂ ବ୍ରହ୍ମାପି ତ ତଂ ନରଂ ନ ରଞ୍ଜୟତି"

"ମୂର୍ଖକୁ ଆଳାପ ସହଜ ସୁଲଭ ଦରବେ ପାରିବ ତୋଷି କଷ୍ଟ ସାଧ୍ୟ ଧନେ ଭକ୍ତ ପ୍ରୀତି ଦାନେ ତୋଷି ନ ପାର ମନୀଷୀ ।"

ଅଳପ ଜ୍ଞାନରେ ଜ୍ଞାନୀ ବୋଲାଏ ଯେ ସେହି ଦୁର୍ଭମାନଙ୍କୁ
ତୋଷି ନ ପାରବେ ନିଜେ ବେଦ୍ କହି ବଧାତା ଆସି ତା ଠାକୁ ।
ଦ୍ୱିତୀୟ କାହାଣୀ ଖଣ୍ଡ ଶେଷ ହେଲା ଏଠାରେ ପାଠକବର ।
ଦୋଷ ତେଜି ଗୁଣ ଘେନିବ ଏଥିରୁ କହେ କଥା ରଚକର ।



ଏହାପରେ ତୃତୀୟ ଭାଗ ପଢ଼ନ୍ତୁ

ମୁଦ୍ରାକର—ନିରଞ୍ଜନ ପ୍ରେସ, ଓଡ଼ିଆବଜାର, କଟକ-୨

# ବିଜ୍ଞାପନ

ଶ୍ରୀମଦ୍ ଭାଗବତ ସୃଷ୍ଟିକର୍ତ୍ତାଙ୍କ ମୁଖ ନିସୃତ ବାଣୀହେତୁ ଏହା ଅଷ୍ଟାଦଶ ପୁରାଣ ମଧ୍ୟରେ ଶ୍ରେଷ୍ଠ ଗ୍ରନ୍ଥରୂପେ ପରିଗଣିତ । ଏଣୁ ଏହି ଗ୍ରନ୍ଥ ଘରେ, ଘରେ ଏବଂ ଦେବଦେବୀମନ୍ଦିରମାନଙ୍କରେ ପୂଜା ହେଉଅଛି ତଥା ପାଠ ମଧ୍ୟ ହେଉଅଛି । କିନ୍ତୁ ଏହି ଭାଗବତ ୧୩ ଖଣ୍ଡି ବହି ହେଉ ତହିଁରୁ ସାର ବା ତାହାର ମାହାତ୍ମ୍ୟ ସଂଗ୍ରହ କରିବା ବହୁକଷ୍ଟ ସାଧ୍ୟ । ଏଣୁ ଲୋକ ଲୋଚନକୁ ଆଣିବା ନିମିତ୍ତ ମହର୍ଷି ବ୍ୟାସଦେବଙ୍କ ପ୍ରଣୀତ ସଂସ୍କୃତ ଶ୍ଳୋକର ଅନୁବାଦ ସହ 'ଭାଗବତ ମାହାତ୍ମ୍ୟ' ପୁସ୍ତକ ଖଣ୍ଡି ପାଠ କଲେ ଉକ୍ତ ତେରଖଣ୍ଡ ଭାଗବତ ବହିର ମାହାତ୍ମ୍ୟ ଏଥିରେ ଲାଭ କରିପାରିବେ । ଏହା ବ୍ୟତୀତ ଉକ୍ତ ଭାଗବତ ମାହାତ୍ମ୍ୟ ବହିଟି ପାଠକଲେ ସେଥିରୁ ପାଇବେ— ଚତୁଃଶ୍ଳୋକୀ ଭାଗବତ, ଭଗବାନଙ୍କ ମୁଖରୁ ବ୍ରହ୍ମାଙ୍କ ପ୍ରତି କଥିତ ଶ୍ରୀମଦ୍ ଭାଗବତ ମାହାତ୍ମ୍ୟ, ଦେବର୍ଷି ନାରଦଙ୍କ ଭକ୍ତି ସହ ଭେଟ, 'ଭକ୍ତିର କଷ୍ଟ ନିବୃତ୍ତି ପାଇଁ ନାରଦଙ୍କ ଉଦ୍ୟୋଗ । ଗୋକର୍ଣ୍ଣ ଉପାଖ୍ୟାନ, ଧୁନ୍ଧୁକାରୀ ପ୍ରେତ ଶରୀରପ୍ରାପ୍ତି ଓ ତହିଁରୁ ଉଦ୍ଧାର ତଥା ଶ୍ରୀମଦ୍ ଭାଗବତ ସପ୍ତାହ ଯଜ୍ଞର ବିଧି ।

ଏତଦ୍‌ବ୍ୟତୀତ ବେଦ, ବେଦାନ୍ତ, ଉପନିଷଦ୍, ଓଷା, ବ୍ରତ, ଗୀତ ସମସ୍ତ ପ୍ରକାର ପୁରାଣ, ଜନ୍ମ, ନାଟକ, ପଞ୍ଜିକା କ୍ୟାଲେଣ୍ଡର ସହ କୋମଳମତି ଶିଶୁମାନଙ୍କ ବିଦ୍ୟାରମ୍ଭ ପାଇଁ ବିଭିନ୍ନ ପ୍ରକାରର ଅକ୍ଷର ଶିକ୍ଷାବହି ନିମ୍ନ ଠିକଣାରେ ପତ୍ରାଳାପ କଲେ ସୁବିଧା ଦରରେ ପାଇପାରିବେ ।


ଠି. ଣା

ମେସର୍ସ—**ଧର୍ମଗ୍ରନ୍ଥ ଷ୍ଟୋର**

ପ୍ରୋପ୍ରାଇଟର—**ଶ୍ରୀ ବିଦ୍ୟାଧର ସାହୁ**

ଅଲିଶାବଜାର କଟକ—୨

ଫୋନ ନଂ-୨୦୭୯୭